ଏ'ଜୀବନର ଅନ୍ତହୀନ କଥା, ବାହାରୁ ସହଜ ସରଳ ମନେ ହେଉଥିବା ଚରିତ୍ରମାନେ ହଠାତ୍ କିଭଳି ଜଟିଳ ମନେ ହୁଅନ୍ତି। ମୁଖା ଖସିଯାଏ। ସବୁ ଯେପରି ଅସ୍ୱସ୍ତିକର ହୋଇଉଠେ। ହୁଏତ ସାଧାରଣ ବ୍ୟକ୍ତିବିଶେଷଙ୍କୁ ଏହି ପରିବର୍ତ୍ତନ ସେପରି କିଛି ମନେ ହୁଏନା। ମାତ୍ର ଅଣନିଃଶ୍ୱାସୀ ହୋଇ ଉଠେ ସେମାନଙ୍କ ମଧ୍ୟରେ ବଂଚୁଥିବା ଅନ୍ୟ ମଣିଷଟି। ମନର ଏହି ଅସହ୍ୟ ଜ୍ୱଳନରୁ ମୁକ୍ତି ନିମନ୍ତେ ସେ ଲେଖିବସେ। ଯେପରି ହୃଦୟକୁ ଭାରାକ୍ରାନ୍ତ କରୁଥିବା କଥାଟି କାହାକୁ ନ କହି ପାରିବା ଯାଏ ଶାନ୍ତି ମିଳେନା, ଠିକ୍ ସେଇଭଳି କଲମର ସାହାଯ୍ୟ ନିଏ ସେ। ସୃଷ୍ଟିହୁଏ ଗଳ୍ପ, କବିତା ଇତ୍ୟାଦି ଇତ୍ୟାଦି।

ଲେଖକ ଗାଳ୍ପିକ ହେଉ ବା କବିଟିଏ ହେଉ ତା' ଦୃଷ୍ଟିର ଫୋକସ୍ ମଧ୍ୟରେ ଏ ସବୁକୁ ତତ୍‌କ୍ଷଣାତ୍ ଧରିରଖେ ସେ। ପାଠକ ନିଜ ପ୍ରତିବିମ୍ବ ଦେଖିପାରେ ସେସବୁ ପଢ଼ିବା ସମୟରେ। ତେଣୁ ସେଥିରେ ଥିବା ଚରିତ୍ରମାନଙ୍କ ପ୍ରତି ତା'ର ସ୍ନେହ ସହାନୁଭୂତି ଉଦ୍ରେକ ହୁଏ।

'ଅଂଧକାରର ରଂଗ' ଗଳ୍ପ ସଂକଳନଟିରେ ସ୍ଥାନ ପାଇଥିବା ଗଳ୍ପଗୁଡ଼ିକ ୧୯୭୭ ବର୍ଷର ପରେ ପରେ ବିଭିନ୍ନ ସମୟରେ ଲେଖା ଯାଇଛି। କେତେକ ପତ୍ର ପତ୍ରିକାରେ ପ୍ରକାଶ ପାଇବା ସହ ଆକାଶବାଣୀ, ଦୂରଦର୍ଶନରେ ମଧ୍ୟ ପ୍ରଚାର କରାଯାଇଛି। ଏଥିନିମନ୍ତେ ସଂପୃକ୍ତ ପ୍ରକାଶକ, ଅନୁଷ୍ଠାନମାନଙ୍କୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି।

ମୋତେ ଲେଖିବା ପାଇଁ ନିର୍ଦ୍ଦେଶ ଦେଇ ପ୍ରକାରାନ୍ତରେ ମୋର ଶୁଭେଚ୍ଛୁ ଭାବେ ମୋତେ ସେମାନେ ଉତ୍ସାହିତ କରିଛନ୍ତି। ସେମାନଙ୍କର ସ୍ନେହ, ଶ୍ରଦ୍ଧା, ଆଗ୍ରହ ମୋ ଭଳି ଜଣେ ସାଧାରଣ ଲେଖକ ପାଇଁ ହୋଇଛି ପ୍ରେରଣାର ଉତ୍ସ।

ମୋର ଅନେକ ବଂଧୁ ଗଳ୍ପ ସଂକଳନଟି ଶୀଘ୍ର ଛପାଇବା ପାଇଁ ମୋତେ ବହୁବାର କହିବା ପରେ ମଧ୍ୟ କେତୋଟି ବର୍ଷ ବିତି ଯାଇଛି ପ୍ରକାଶକଙ୍କ ଅପେକ୍ଷାରେ।

ଅଂଧକାରର ରଂଗ
ଲେଖିକା :
ଶକୁନ୍ତଳା ପଣ୍ଡା
ପ୍ରକାଶକ :
ସୁଚରିତା ପବ୍ଲିକେଶନ
୪୩୧, ଶହୀଦ ନଗର
ଭୁବନେଶ୍ୱର ୭୫୧୦୦୭
ପ୍ରଚ୍ଛଦ :
ଫାଲ୍‌ଗୁନି ସାମନ୍ତରାୟ
ଟାଇପ୍‌ସେଟ୍ :
ଓମ୍‌କାର,
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର
ମୁଦ୍ରଣ :
ଶୋଭନ୍ ପ୍ରିଣ୍ଟର୍ସ,
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର
ପ୍ରଥମ ପ୍ରକାଶ :
ନଭେମ୍ବର, ୧୯୮୭
ଦ୍ୱିତୀୟ ପ୍ରକାଶ :
ଏପ୍ରିଲ୍, ୧୯୯୩
ମୂଲ୍ୟ :
ଚାଳିଶ ଟଙ୍କା ମାତ୍ର

**ANDHAKARAR RANGA**
Written by :
**Sakuntala Panda**
Published by
**Sucharita Publications**
**First Edition : 1987**
**Second Edition : 1993**
Typeset :
**'OMKAR'**
Acharya Vihar, Bhubaneswar
Printers :
**Sovan Printers,**
Acharya Vihar, Bhubaneswar
Price :
**Forty only**

ସେ ସ୍ୱତନ୍ତ୍ର
ସେ ଏକ ବ୍ୟତିକ୍ରମ
ସେ ଅନନ୍ୟ
ପ୍ରତିଟି ମୂହୂର୍ତ୍ତରେ ମୋ
ପାଖେ ପାଖେ ରହିଥିବା
ଏଇ
ଅବିଚ୍ଛେଦ୍ୟ ସଂପର୍କୀୟଙ୍କୁ... ।
ଶକୁନ୍ତଳା

ଏ ଜୀବନର ଅନ୍ତହୀନ କଥା, ବାହାରୁ ସହଜ ସରଳ ମନେ ହେଉଥିବା ଚରିତ୍ରମାନେ ହଠାତ୍ କିଭଳି ଜଟିଳ ମନେ ହୁଅନ୍ତି। ମୁଖା ଖସିଯାଏ। ସବୁ ଯେପରି ଅସ୍ୱସ୍ତିକର ହୋଇଉଠେ। ହୁଏତ ସାଧାରଣ ବ୍ୟକ୍ତିବିଶେଷଙ୍କୁ ଏହି ପରିବର୍ତ୍ତନ ସେପରି କିଛି ମନେ ହୁଏନା। ମାତ୍ର ଅଣନିଃଶ୍ୱାସୀ ହୋଇ ଉଠେ ସେମାନଙ୍କ ମଧ୍ୟରେ ବଂଚୁଥିବା ଅନ୍ୟ ମଣିଷଟି। ମନର ଏହି ଅସହ୍ୟ ଜ୍ୱଳନରୁ ମୁକ୍ତି ନିମନ୍ତେ ସେ ଲେଖିବସେ। ଯେପରି ହୃଦୟକୁ ଭାରାକ୍ରାନ୍ତ କରୁଥିବା କଥାଟି କାହାକୁ ନ କହି ପାରିବା ଯାଏ ଶାନ୍ତି ମିଳେନା, ଠିକ୍ ସେଇଭଳି କଲମର ସାହାଯ୍ୟ ନିଏ ସେ। ସୃଷ୍ଟିହୁଏ ଗଳ୍ପ, କବିତା ଇତ୍ୟାଦି ଇତ୍ୟାଦି।

ଲେଖକ ଗାଳ୍ପିକ ହେଉ ବା କବିଟିଏ ହେଉ ତା' ଦୃଷ୍ଟିର ଫୋକସ୍ ମଧ୍ୟରେ ଏ ସବୁକୁ ତତ୍‌କ୍ଷଣାତ୍ ଧରିରଖେ ସେ। ପାଠକ ନିଜ ପ୍ରତିବିମ୍ବ ଦେଖିପାରେ ସେସବୁ ପଢ଼ିବା ସମୟରେ। ତେଣୁ ସେଥିରେ ଥିବା ଚରିତ୍ରମାନଙ୍କ ପ୍ରତି ତା'ର ସ୍ନେହ ସହାନୁଭୂତି ଉଦ୍ରେକ ହୁଏ।

'ଅଂଧକାରର ରଂଗ' ଗଳ୍ପ ସଂକଳନଟିରେ ସ୍ଥାନ ପାଇଥିବା ଗଳ୍ପଗୁଡ଼ିକ ୧୯୭୭ ବର୍ଷର ପରେ ପରେ ବିଭିନ୍ନ ସମୟରେ ଲେଖା ଯାଇଛି। କେତେକ ପତ୍ର ପତ୍ରିକାରେ ପ୍ରକାଶ ପାଇବା ସହ ଆକାଶବାଣୀ, ଦୂରଦର୍ଶନରେ ମଧ୍ୟ ପ୍ରଚାର କରାଯାଇଛି। ଏଥିନିମନ୍ତେ ସଂପୃକ୍ତ ପ୍ରକାଶକ, ଅନୁଷ୍ଠାନମାନଙ୍କୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି।

ମୋତେ ଲେଖିବା ପାଇଁ ନିର୍ଦ୍ଦେଶ ଦେଇ ପ୍ରକାରାନ୍ତରେ ମୋର ଶୁଭେଚ୍ଛୁ ଭାବେ ମୋତେ ସେମାନେ ଉତ୍ସାହିତ କରିଛନ୍ତି। ସେମାନଙ୍କର ସ୍ନେହ, ଶ୍ରଦ୍ଧା, ଆଗ୍ରହ ମୋ ଭଳି ଜଣେ ସାଧାରଣ ଲେଖକ ପାଇଁ ହୋଇଛି ପ୍ରେରଣାର ଉତ୍ସ।

ମୋର ଅନେକ ବଂଧୁ ଗଳ୍ପ ସଂକଳନଟି ଶୀଘ୍ର ଛପାଇବା ପାଇଁ ମୋତେ ବହୁବାର କହିବା ପରେ ମଧ୍ୟ କେତୋଟି ବର୍ଷ ବିତି ଯାଇଛି ପ୍ରକାଶକଙ୍କ ଅପେକ୍ଷାରେ।

ଶେଷରେ 'ସୁଚରିତା'ର ପ୍ରକାଶନ ସଂସ୍ଥା ନିଜେ ଏ ଦାୟିତ୍ୱ ଗ୍ରହଣ ନ କରିଥିଲେ ହୁଏତ ଏ ଭଳି ସୁରୁଚିସଂପନ୍ନ ଗଳ୍ପ ପୁସ୍ତକଟି ପ୍ରସ୍ତୁତ ହୋଇ ପାରି ନ ଥାନ୍ତା।

ସବୁ ସତ୍ତ୍ୱେ ମଧ୍ୟ ପ୍ରଚ୍ଛଦ ସମସ୍ୟା। ତାହା ଯଥା ସମୟରେ ଅଂକା ଯାଇ ପାରିଲା ନାହିଁ। ହୋଇପାରେ ଶ୍ରଦ୍ଧାସ୍ପଦ ଫାଲ୍‌ଗୁନିଙ୍କୁ ମୁଁ ଖୋଜି ପାଇ ନ ଥିଲି। ନିଜର ପଦସ୍ଥ ସରକାରୀ ଦାୟିତ୍ୱ ସତ୍ତ୍ୱେ ମଧ୍ୟ ସେ ସୌଖୀନ ଶିଳ୍ପୀଟିଏ। ଅତ୍ୟନ୍ତ ଆଗ୍ରହରେ ସେ ଆଂକିଛନ୍ତି 'ଅଂଧକାରର ରଂଗ'ର ପ୍ରଚ୍ଛଦ ଛବି। ତାଙ୍କୁ ମୋର ଅନ୍ତରର ଶ୍ରଦ୍ଧା, ଶୁଭେଚ୍ଛା ତଥା କୃତଜ୍ଞତା ଜଣାଉଛି।

ସୁଖର କଥା ଏ ସଂକଳନ ନିମନ୍ତେ ଗଳ୍ପଗୁଡ଼ିକ ମୁଁ ଯେ ନିଜେ ମନୋନୀତ କରିଛି ତା' ଠିକ୍ ନୁହେଁ। ମୋର ପ୍ରିୟ ପାଠକ, ଲେଖକ ତଥା ଅନ୍ତରଙ୍ଗ ବଂଧୁମାନେ ଯେ କି ପୂର୍ବରୁ ଏ ସମ୍ପର୍କରେ ସେମାନଙ୍କର ମତାମତ ଜଣାଇ ସାରିଛନ୍ତି, ମୁଁ କେବଳ ସେଇମାନଙ୍କୁ ଭଲ ଲାଗିଥିବା ଗଳ୍ପଗୁଡ଼ିକୁ ଏକାଠି କରି ଦେଇଛି।

ତଥାପି ଜାଣିନି, ଏ ବହିଟିର ସାହିତ୍ୟିକ ମୂଲ୍ୟ କିଭଳି ନିର୍ଦ୍ଧାରିତ ହେବ। ଲେଖିବାବେଳେ ମୁଁ ଯେ ସଂପୂର୍ଣ୍ଣ ନିଜ ମଧ୍ୟରେ ରହିଥାଏ। ମୋ ପାଇଁ, ନିଜର ଆଗ୍ରହରେ ମୋତେ ସ୍ପର୍ଶ କରିଥିବା ବିଷୟମାନ କେବଳ ଲେଖି ଯାଇଛି ଟିକିଏ ଆତ୍ମସନ୍ତୋଷ ପାଇବା ପାଇଁ।

ବିଜ୍ଞ ପାଠକ ପାଠିକାମାନଙ୍କ ଦ୍ୱାରା ଏହା ଆଦୃତ ହୋଇ ପାରିଲେ ପରବର୍ତ୍ତୀ ସଂକଳନ କେତୋଟି ଯଥାଶୀଘ୍ର ପ୍ରକାଶ କରିବା ନିମନ୍ତେ ଉତ୍ସାହିତ ହେବି।

ସ୍ୱର୍ଗତଃ ପ୍ରଖ୍ୟାତ ଗାଳ୍ପିକ ଅଖିଳମୋହନ ପଟ୍ଟନାୟକ ମୃତ୍ୟୁର ମାତ୍ର କିଛିଦିନ ପୂର୍ବରୁ ସେ ବର୍ଷର ପୂଜା ବିଶେଷାଂକ 'ଝଂକାର' ପୃଷ୍ଠାରେ ପ୍ରକାଶ ପାଇଥିବା ମୋର ଗଳ୍ପ 'ଅଧଂକାରର ରଂଗ' ପଢି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ।

ଏବେ ସେଇ ଗଳ୍ପ ସଂକଳନଟିର ପ୍ରସ୍ତୁତି ସମୟରେ ଏ ସବୁ ମନେ ପଡ଼ି ଚକ୍ଷୁ ଅଶ୍ରୁସଜଳ ହେଉଛି।

ଏ ପୁସ୍ତକ ସଂପର୍କରେ ଆଉ ବିଶେଷ କିଛି କହିବା ସମୀଚୀନ ହେବନି। ସୁଧୀ ପାଠକ ପାଠିକାଙ୍କର ସୁଚିନ୍ତିତ ମତାମତ ଅପେକ୍ଷାରେ ରହିଲି।

୪୩୧, ଶହୀଦନଗର
ଭୁବନେଶ୍ୱର-୭

ପ୍ରଦ୍ୟୁମ୍ନ ମିଶ୍ର

# ସୂଚୀ

# ଅନ୍ଧକାରର ରଙ୍ଗ

ଶରତ ସକାଳର କୁହୁଡ଼ିଘେରା ଆକାଶରେ ପାଉଁଶିଆ ରଙ୍ଗର ଅଦିନ ଭସାମେଘ ଖଣ୍ଡେ ଦେଖାଦେଇଛି। ଶୀତଳ ସୂର୍ଯ୍ୟ କିରଣରେ ମହାନଗରୀର ଚିକ୍କଣ ରାସ୍ତାଟି ଦେଖାଯାଉଛି ଖୁବ୍ ଉଜ୍ଜ୍ୱଳ।

ରାସ୍ତାର ଆରପାଖରେ ବିଖ୍ୟାତ ଚକ୍ଷୁ ଚିକିତ୍ସାଳୟର ଫାଟକ। ଫାଟକ ପାଖରୁ ଭିତରକୁ ଠିକ୍ ରାଜରାସ୍ତା ଭଳି ଲମ୍ବି ଯାଇଛି ପିଚୁ ରାସ୍ତାଟି। ଦୁଇ ପାର୍ଶ୍ୱରେ ସବୁଜ ଲନ୍, ଅନେକ ରଙ୍ଗର ଦେଶୀ ବିଦେଶୀ ପୁଷ୍ପରାଜି ପଥିକକୁ ସ୍ୱାଗତ କରିବାକୁ ଅପେକ୍ଷା କରିଛନ୍ତି। କିନ୍ତୁ ବିଚାରା ଦୃଷ୍ଟିହୀନର ଅନ୍ଧକାରମୟ ଜୀବନରେ ସବୁ ରଙ୍ଗହୀନ। ସେଇ ଏକମାତ୍ର ରଙ୍ଗ ତାକୁ ଆଚ୍ଛନ୍ନ କରେ, ତା' ଅନ୍ଧକାରର ରଙ୍ଗ।

ଅନେକ ସକାଳୁ ରୋଗୀଙ୍କର ଭିଡ଼ ଆରମ୍ଭ ହୋଇଯାଇଛି। ଦିନ ଦିନ ଧରି ଏଇଭଳି ରାତ୍ରିର ଶୀତ, କାକର ଖାଇ ବହୁ ଦୂରରୁ ଆସି ପଡ଼ି ରହିଛନ୍ତି ସେମାନେ।

ଏ ପର୍ଯ୍ୟନ୍ତ ଚିକିତ୍ସାଳୟର ଘଣ୍ଟାରେ ଆଠଟା ବାଜି ନାହିଁ ଏବଂ ପ୍ରତ୍ୟହ ସକାଳର ଏହି ସମୟରେ ଡକ୍ଟର ଚନ୍ଦନ ଯେତେବେଳେ ଚିକିତ୍ସାଳୟର ପ୍ରଧାନ ଫାଟକ ଅତିକ୍ରମ କରି ଆଗେଇ ଆସନ୍ତି, ଠିକ୍ ସେତିକିବେଳେ ପାଖ ଇଉକାଲିପଟସ୍ ଗଛ ପାଖରୁ ତାଙ୍କ ପାଖକୁ ଦୌଡ଼ି ଆସନ୍ତି ଦୁଇଟି ଯୁବକ।

"ନମସ୍ତେ, ଡକ୍ଟର ସାବ୍...."

"ନମସ୍ତେ", ହସି ହସି ଆଗେଇ ଯାଆନ୍ତି ଡକ୍ଟର ଚନ୍ଦନ।

"ଡକ୍ଟର ସାବ୍, କବ୍ ଆୟେଗା ହମାରା ଆଖଁ?"

ଅତି ସ୍ନେହରେ ସେମାନଙ୍କ ପିଠିରେ ହାତ ଛୁଆଁଇ ସେ କହନ୍ତି, "ଘବରାଓ ମତ୍, ଜରୁର୍ ଆୟେଗା। ବସ୍ ଥୋଡ଼ା ହି ଦିନ୍ କି ବାତ୍ ହୈ।"

ଏଇ ଟିକିଏ ମାତ୍ର ସାନ୍ତ୍ୱନା। ଏତିକି ଶୁଣିବା ପାଇଁ ଏମିତି ଧାଇଁ ଆସନ୍ତି ସେମାନେ ପ୍ରତିଦିନ। ସେମାନଙ୍କ ମନର ଭାଷା ବୁଝି ନିଅନ୍ତି ଡକ୍ଟର ଚନ୍ଦନ। ଡାକ୍ତରଙ୍କର ସେଇ ପଦିଏ ଧୀର କଥା ମନ୍ତ୍ରତୁଲ୍ୟ କାମଦିଏ ସେମାନଙ୍କ ମନରେ। ସେମାନେ ଦୁଇବନ୍ଧୁ। ବନ୍ଧୁତ୍ୱ ଗଢିଉଠେ ଏଇ ଚିକିତ୍ସାଳୟରେ। ଦୁହିଁଙ୍କୁ ପରୀକ୍ଷା କରି ଡକ୍ଟର ଚନ୍ଦନ ମତବ୍ୟକ୍ତ କରନ୍ତି, "କେରାଟୋପ୍ଲାଷ୍ଟି ସର୍ଜରୀ ଆବଶ୍ୟକ।" ସେମାନଙ୍କୁ ଅପେକ୍ଷା କରିବାକୁ ହେବ ଅନିର୍ଦ୍ଦିଷ୍ଟ କାଳ। ଦୃଷ୍ଟିଶକ୍ତି ଫେରି ପାଇବାପାଇଁ ସାରାଜୀବନ ଯଦି ଅପେକ୍ଷା କରିବାକୁ ପଡ଼େ, ତା' ସେମାନେ କରିବେ। ସେମାନଙ୍କ ପୂର୍ବରୁ ଥିବେ ଆଉ କେତେଜଣ। ଫ୍ରେସ୍ ଆଖି ଆସି ପହଞ୍ଚିବା ପରେ ପରେ ଅପେକ୍ଷାରତ ଡାକ୍ତର ସେଇ ଦୃଷ୍ଟିହୀନଙ୍କର ଅସ୍ତ୍ରୋପଚାର ଆରମ୍ଭ କରିଦିଅନ୍ତି।

କେବେ ଆସିବ ସେ ସୁଦିନ? ଯୁବକ ବନ୍ଧୁଦ୍ୱୟଙ୍କ ବିଷଣ୍ଣ ମନରେ ଆଶାର ସଂଚାର ହୋଇ କ୍ଷଣକରେ ମିଳେଇ ଯାଏ। ପ୍ରତିଦିନ ସେମାନେ ଖବର ନିଅନ୍ତି, ଆଖି ଆସି ପହଞ୍ଚିଛି କି ନାହିଁ? ନା - ଆସିନାହିଁ। ଏଥର ବିଳମ୍ୱ ହେଉଛି।

ଡକ୍ଟର ଚନ୍ଦନ ପ୍ରତିଥର ପରି ସାନ୍ତ୍ୱନା ଦେଇଛନ୍ତି। "ଜରୁର୍ ଆୟେଗା ଏ ଆଖଁ।"

ପ୍ରତ୍ୟହ ଆକସ୍ମିକ ମୃତ୍ୟୁର ଶୀତଳ ସ୍ପର୍ଶରେ ଅନେକ ଜୀବନର ଅନ୍ତ ହେଉଛି। କେହି ଚକ୍ଷୁଦାନ କରିବାର ପ୍ରତିଶ୍ରୁତି ଦେଇଛନ୍ତି ମୃତ୍ୟୁର ବହୁ ପୂର୍ବରୁ କିମ୍ୱା ଆତ୍ମୀୟ ସ୍ୱଜନଙ୍କ ଅନୁରୋଧକ୍ରମେ ମୃତ ବ୍ୟକ୍ତିର ଚକ୍ଷୁ ଦୁଇଟି ମିଳି ଯାଉଛି ଅନାୟାସରେ।

କିଛି ଦିନ ତଳେ - ସ୍କୁଟର ଦୁର୍ଘଟଣାରେ କ୍ଷତ ବିକ୍ଷତ ହୋଇ ଆସିଥିଲେ ସ୍ୱାମୀ ସ୍ତ୍ରୀ ଦୁଇଜଣ। ଭାଗ୍ୟ ସେମାନଙ୍କୁ ବଞ୍ଚାଇ ରଖିଲା ନାହିଁ। ଅନ୍ୟମାନଙ୍କ ପାଇଁ ଚକ୍ଷୁଦାନ ଦେଇ ସେମାନେ ଚାଲିଗଲେ।

ଏହି ବିଷୟରେ କଥାବାର୍ତ୍ତା କରୁଥିଲେ ସେଇ ଆଶାୟୀ ବନ୍ଧୁଦ୍ୱୟ। ଅନେକ ଦିନ ହେଲା ଏଭଳି କେହି ଆସି ନାହାନ୍ତି।

"ଯଦି କେଉଁଠୁ ଆଖି ମିଳିବାର ସମ୍ଭାବନା ଦେଖାଦିଏ, ଏଥର ଲିଷ୍ଟରେ ପ୍ରଥମରେ ହିଁ ଆମର ନାମ।"

ମାତ୍ର ଦୁଇଟି ଆଖି! ଅନେକ ଆଶା, ଅନେକ କଳ୍ପନାର ଫୁଲ ଫୁଟାଇଛି ସେ ଦୁହିଁଙ୍କ ମନରେ।

ଡକ୍ଟର ଚନ୍ଦନ ସେମାନଙ୍କୁ ଖୁବ୍ ବୁଝନ୍ତି। ଦୀର୍ଘ ସତରବର୍ଷର କର୍ମରତ ଜୀବନ। ଦୂରଦୂରାନ୍ତରୁ ଆସୁଥିବା ବହୁ ଚକ୍ଷୁରୋଗୀଙ୍କୁ ସେ ଚିକିତ୍ସା କରିଛନ୍ତି, ସେମାନଙ୍କର ସୁଖ ଦୁଃଖ ବୁଝିଛନ୍ତି। ଅସହାୟ ହୋଇ ସେମାନେ ତାଙ୍କର ଆଶ୍ରା ନେଇଛନ୍ତି।

ଓ.ପି.ଡ଼ି. ବାରଣ୍ଡାରେ ପାଦ ଦେଉ ଦେଉ ସେମାନେ ତାଙ୍କୁ ଘେରି ଯାଇଥିଲେ। ଅନ୍ୟମାନଙ୍କ ଭଳି ଏଥିରେ ସେ ବିବ୍ରତ ବା ବିରକ୍ତ ନ ହୋଇ ଆଗେଇ ଯାଇଛନ୍ତି ତାଙ୍କ ଅଫିସ୍ କୋଠରୀକୁ। ତା'ର କିଛି ସମୟ ପରେ ସହକାରୀ ଡ଼ାକ୍ତରମାନଙ୍କ କାର୍ଯ୍ୟ ତଦାରଖ କରିଛନ୍ତି, ଅପ୍‌ଥାଲ୍‌ମୋସ୍କୋପ୍‌ଟି ଖୋଲି କେତେ ରୋଗୀଙ୍କ ଆଖି ପରୀକ୍ଷା କରି ବିଭିନ୍ନ ପ୍ରକାରର ନିର୍ଦ୍ଦେଶ ଦେଇଛନ୍ତି ଜୁନିୟର୍‌ମାନଙ୍କୁ।

କେବେ କେବେ ତାଙ୍କର ଅସ୍ତ୍ରଚିକିତ୍ସାର ଡ଼େଟ୍ ନ ହୋଇଥିଲେ ବି 'ରେଟିନା ଡ଼ିଟାଚ୍‌ମେଣ୍ଟ୍', 'ଟ୍ୟୁମର୍' ଇତ୍ୟାଦି ସିରିୟସ କେସ୍‌ଗୁଡ଼ିକ ସେ ହାତକୁ ନେଇଛନ୍ତି। କେଉଁଦିନ ସକାଳ ନଥରୁ ରାତି ଦଶ ବାଜିଛି। ଅବିଶ୍ରାନ୍ତ ଭାବରେ ହାତ ଦୁଇଟି କାର୍ଯ୍ୟରତ। ସହକାରୀ ଡ଼ାକ୍ତର, ଛାତ୍ରମାନେ କ୍ଳାନ୍ତ ହୋଇ ପଡ଼ିଲେଣି, ସେ କିନ୍ତୁ କ୍ଳାନ୍ତ ନୁହଁନ୍ତି।

ଏମାନଙ୍କ ପାଇଁ ଦିନଟିଏ ବିଳମ୍ବ କରାଯାଇ ପାରେନା। ଜଣଙ୍କ ପରେ ଜଣେ ଅପେକ୍ଷା କରିଛନ୍ତି ତାଙ୍କୁ ହିଁ।

ନିଜେ ପ୍ରଫେସର୍ ଚନ୍ଦନ ଅସ୍ତ୍ରଚିକିତ୍ସା କକ୍ଷରେ। ଅସହାୟ ମୁଖରେ ହସ ଫୁଟିଛି, ସେମାନଙ୍କୁ ଛୁଇଁବା ମାତ୍ରକେ ଆନନ୍ଦରେ କଣ୍ଠ ଅବରୋଧ ହୋଇଛି। ଯୋଡ଼ହସ୍ତ ଉପରକୁ ଟେକି ବୃଦ୍ଧ ଦୃଷ୍ଟିହୀନ ରୋଗୀଟି ଅତ୍ୟନ୍ତ ଆବେଗରେ କହିଛି, "ତୁ ହମାରା ଭଗବାନ ହେ ଡ଼କ୍ଟର ସାବ୍, ଅବ୍ କୋଇ ଚିନ୍ତା ନହିଁ।"

ଅପେକ୍ଷାରତ ଆତ୍ମୀୟମାନେ ନିଶ୍ଚିନ୍ତ ନିରୁଦ୍‌ବେଗ ମଧ୍ୟରେ ପ୍ରଫେସର୍ ଚନ୍ଦନଙ୍କର ଶୁଭ ମନାସିଛନ୍ତି।

ଦୀର୍ଘ ବାରଘଣ୍ଟାର ପରିଶ୍ରମ, ମାତ୍ର କେତେ କପ୍ କଫି ବ୍ୟତୀତ ସେ ଆଉ କିଛି ଖାଇ ନାହାଁନ୍ତି।

ଘରକୁ ଯିବାର ଅବସର ନାହିଁ। ସୁପ୍ରିୟା ସ୍ୱାମୀଙ୍କୁ ଜାଣନ୍ତି। ପନ୍ଦରବର୍ଷର ବୈବାହିକ ଜୀବନରେ ଏକ କର୍ତ୍ତବ୍ୟନିଷ୍ଠ ଡ଼ାକ୍ତରଙ୍କୁ ସେ କର୍ତ୍ତବ୍ୟଚ୍ୟୁତ କରାଇବାର ଚେଷ୍ଟା କରି ନାହାନ୍ତି, କେବେ ଦୁଃଖ କରି ନାହାନ୍ତି ସ୍ୱାମୀ ତାଙ୍କର ଡ଼ାକ୍ତରଖାନାରେ ଦିନଟି ମଧ୍ୟରେ ବେଶି ଭାଗ ସମୟ କଟାଇଛନ୍ତି ବୋଲି। କିନ୍ତୁ ଅଭିମାନ କରିଛନ୍ତି, ନିଜେ ଡ଼ାକ୍ତର ହୋଇ ସ୍ୱାସ୍ଥ୍ୟର ଅବହେଳା କରୁଛନ୍ତି ଚନ୍ଦନ। ଅନେକ ପରିଶ୍ରମ ପରେ କ୍ଲାନ୍ତ ବିବ୍ରତ ହୋଇ ଚିନ୍ତା କରିଛନ୍ତି ଚକ୍ଷୁରୋଗ ପାଇଁ ନୂତନ ପ୍ରତିକାର। ବିଭିନ୍ନ ସ୍ଥାନରୁ ଆସୁଥିବା ପୁସ୍ତକ, ପତ୍ରପତ୍ରିକାରେ ଚକ୍ଷୁରୋଗ ତଥା ଅସ୍ତ୍ରଚିକିତ୍ସାର ଗବେଷଣା ସଂକ୍ରାନ୍ତୀୟ ଲେଖା ପଢ଼ିବାରେ କଟିଯାଇଛି କେତେ ରାତ୍ରିର ବିନିଦ୍ର ପ୍ରହର।

ଉଭୟ ଚନ୍ଦନ, ସୁପ୍ରିୟାଙ୍କ ଡ଼ାଏରୀରେ ଟିପାହୋଇ ରହିଛି ବିଭିନ୍ନ ତାରିଖର କେତୋଟି କାର୍ଯ୍ୟକ୍ରମର ତାଲିକା। ବାହାରର ପାର୍ଟିଗୁଡ଼ିକରେ ଏକା ଏକା ଯିବାଟା ଅଭ୍ୟାସରେ ପଡ଼ିଯାଇଛି ସୁପ୍ରିୟାଙ୍କର। କିନ୍ତୁ ବନ୍ଧୁମାନଙ୍କ ପରିବାରର କୌଣସି ଉତ୍ସବରେ ପୁଅ ଝିଅ ଦୁହିଁଙ୍କୁ ଧରି ସେ ଯେତେବେଳେ ପହଞ୍ଚିଯାଆନ୍ତି, ମନଟା ଅକାରଣେ ବିଷଣ୍ଣ ହୋଇଯାଏ ସେଦିନ।

ଘରକୁ ଆସି ସୁପ୍ରିୟା ଦେଖନ୍ତି ତଥାପି ଫେରିନାହାନ୍ତି ଚନ୍ଦନ।

ଏମିତି ଦିନେ ସୁପ୍ରିୟା କହିଥିଲେ, "ଥରେ ବି କ'ଣ ସମୟ ହୁଏନା ତୁମକୁ ମୋ ସଙ୍ଗେ ଯିବାକୁ!"

"ତା' ତୁମେ ଭଲଭାବେ ଜାଣ।"

"ସେମାନେ ସମସ୍ତେ ଆସି ପାରୁଛନ୍ତି। ଅଥଚ ତୁମେ.."

"ଓଃ, ମୁଁ ଯେ ବଞ୍ଚିଛି, ଏଇ କ'ଣ ତୁମପାଇଁ ଯଥେଷ୍ଟ ନୁହେଁ?" ଖୁବ୍ ରାଗିଯାଇଥିଲେ ମଧ୍ୟ ଶାନ୍ତ ସ୍ୱରରେ ପତ୍ନୀଙ୍କୁ ଏତିକିମାତ୍ର କହିଲେ ଡ଼କ୍ଟର ଚନ୍ଦନ।

"ହଁ ଡିଅର୍, ମୁଁ ସେଇୟା ଚାହେଁ, ତୁମେ ସୁସ୍ଥ ଦେହ ମନ ନେଇ ଚିରଦିନ ବଞ୍ଚିରହ। ତୁମଠୁଁ ମୁଁ ଆଉକିଛି ଆଶା କରିବିନି।"

ଯା ପରେ ଅଖଣ୍ଡ ନୀରବତା। ସୁପ୍ରିୟାଙ୍କ ଚକ୍ଷୁରୁ ଝରିଥିଲା କେତେଟୋପା ଅଶ୍ରୁ। ଦୁଃଖ ପ୍ରକାଶ କଲେ ଚନ୍ଦନ, ପାଟିରୁ ବାହାରି ଯାଇଥିବା ଏଇ ପଦଟିଏ

କଥା ପାଇଁ ।

ରାତି କଟିଯାଏ, ସକାଳ ହୁଏ । ଡାକ୍ତର ଜୀବନରେ ଆରମ୍ଭ ହୁଏ ସେଇ ରୋଗୀ, ରୋଗ ଓ ଚିକିତ୍ସାଳୟକୁ ନେଇ କର୍ମତତ୍ପରତା । ଓ.ପି.ଡି., ଅପରେସନ୍ ଥିଏଟର୍, ରାଉଣ୍ଡ ଇତ୍ୟାଦି ଇତ୍ୟାଦି ।

ଅସ୍ତ୍ରଚିକିତ୍ସା ସାରି ବିଳମ୍ବରେ ଫେରିଥିଲେ ମଧ୍ୟ ପୁଣିଥରେ ନାଇଟ୍ ରାଉଣ୍ଡରେ ଆସନ୍ତି ସେ । ଏମାନଙ୍କୁ ଯେ ଅବହେଳା କରାଯାଇ ପାରେନା । ତାଙ୍କୁ ଘେରି ରହିଛନ୍ତି ସହକାରୀ ପ୍ରଫେସର କେତେଜଣ, ପି.ଜି. ଛାତ୍ରମାନେ । କେତେକ ଗୁରୁତ୍ୱପୂର୍ଣ୍ଣ ଅସ୍ତ୍ରଚିକିତ୍ସା କରାଯାଇଥିବା ରୋଗୀମାନଙ୍କ ପାଖରେ କଟିଯାଏ ଅନେକ ସମୟ ।

କେଉଁଠି ରୋଗିଣୀଟି କ୍ଷୀଣ ଚିତ୍କାର କରୁଛି, ''ବହୂ, ଥୋଡ଼ାସା ପାନି ପିଲାଓ ।'' ବୋହୂଟି ହୁଏତ ଶାଶୁଙ୍କୁ ଏକା ଛାଡ଼ିଦେଇ ଅନେକ ବେଳୁ ଚାଲିଯାଇଛି ଘରକୁ । ପାଖରେ ଆଉ କେହି ବି ଆତ୍ମୀୟ ନାହାନ୍ତି ।

ଠିକ୍ ସେମିତି ଛାତ୍ରମାନଙ୍କୁ କଥା କହୁଥିବା ଅବସ୍ଥାରେ ଚାଲିଯାଇ ବୁଢ଼ୀଟିର ଖଟ ପାଖରେ ତଳେ ବସି ପାଣି ସୁରେଇରୁ ଗ୍ଲାସରେ ପାଣି କିଛି ଢାଳି ତାକୁ ପିଆଇ ଦିଅନ୍ତି ପ୍ରଫେସର ଚନ୍ଦନ ।

ଏମିତି ଦିନେ-

ସନ୍ଧ୍ୟାର ବହଳ ଅନ୍ଧକାରରେ ସେ ଘରକୁ ଫେରି ଆସୁଥିଲେ, ଅଳ୍ପ ଦୂରରେ ଆସୁଥିବା ଯୁବ ଡାକ୍ତର ଆନନ୍ଦ ପ୍ରାୟ ପାଖେଇ ଆସି କହିଲେ-

''ହ୍ୟାଲୋ, ସାର୍ ?''

''ହ୍ୟାଲୋ'', ଡକ୍ଟର ଚନ୍ଦନଙ୍କ ଗତି ମନ୍ଥର ହେଲା । ତାଙ୍କ ସ୍ୱରରୁ ମନେ ହେଉଥିଲା, ସେ ଖୁବ୍ କ୍ଳାନ୍ତ ।

''ସାର୍, ଏଥର ଆପଣ କ୍ୟାମ୍ପ୍ ଯାଉଛନ୍ତି ?''

''ହଁ, ଯାଉଛି ।''

''ସାର୍, ଗତଥର ଆପଣ ଯେଉଳି ଅସୁସ୍ଥ ହୋଇପଡ଼ିଲେ, ଏଥର ନ ଗଲେ ହୁଅନ୍ତା ନାହିଁ ?''

''ନୋ, ମାଇଁ ଡ଼ାଇଲଡ୍, ମୋତେ ଯିବାକୁ ହେବ, ଅବଶ୍ୟ ଏଥର ମୁଁ ଡ଼ାଇରେକ୍ଟରଙ୍କୁ ମନା କରିଥିଲି । ଅଲ୍‌ରାଇଟ୍, ସେମାନେ ମୋତେ ଯିବାକୁ ବାଧ୍ୟ କରିଛନ୍ତି ।''

"କିନ୍ତୁ ଆପଣ ଇଚ୍ଛା କଲେ ତ..."

"ହ୍ୟାଭ୍ ପେସେନ୍ସ, ଆନନ୍ଦ।"

ଯୁବଡ଼ାକ୍ତର ଆନନ୍ଦ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ। ଡ଼କ୍ଟର ଚନ୍ଦନ ତାଙ୍କ ପିଠିରେ ହାତରଖି କହିଲେ, "ମୁଁ ଚାକିରୀ କରିଛି। ତା' ଛଡ଼ା ମୋ'ର ବି ତ ଡ଼ାକ୍ତର ହିସାବରେ କର୍ତ୍ତବ୍ୟ ରହିଛି ରୋଗୀଙ୍କ ପ୍ରତି।"

ଟିକିଏ ରହି ସେ ପୁଣି କହିଲେ, "ସୁପ୍ରିୟା ବି ମନା କରୁଛନ୍ତି। ଅଳ୍ପଦିନର ବ୍ୟବଧାନରେ ଦୁଇଟା ଆଇ କ୍ୟାମ୍ପ। ସେଥର ଛାତି ଯନ୍ତ୍ରଣାଟା ଖୁବ୍ ହୋଇଥିଲା। ତେବେ ଏଭଳି ସୁଚିକିତ୍ସାର ସୁଯୋଗ ପାଇ ମୁଁ ଯଦି ସୁସ୍ଥ ନ ହେବି, ତେବେ ସେଇ ଈଶ୍ୱରଙ୍କୁ ଡ଼ାକିବା ଛଡ଼ା ଆମର ଆଉ କ'ଣ କରିବାର ଅଛି, କୁହ ତ ?"

ସହରଠାରୁ ଦୂରରେ ଆଇ କ୍ୟାମ୍ପରେ ବେଶ୍ ଭିଡ଼ ହୋଇଛି। ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ଆସିଥିବା ଆଖିରୋଗୀମାନଙ୍କର ଲମ୍ବା କ୍ୟୁ। ପରାମର୍ଶ ଦେବା, ଆଖି ପରୀକ୍ଷା, କ୍ୟାଟ୍ରାକ୍ଟ, ଟୋସିସ ଇତ୍ୟାଦିର ଅସ୍ତ୍ର ଚିକିତ୍ସା ମଧ୍ୟ ହେଉଛି। ଗ୍ରାମର ଅଭ୍ୟନ୍ତରରୁ ରୋଗୀଙ୍କର ଆସିବା ପୂର୍ବଭଳି ଚାଲିଛି। ବହୁ ବ୍ୟସ୍ତତା ମଧ୍ୟରେ ପ୍ରଫେସର ଚନ୍ଦନଙ୍କ ତତ୍ତ୍ୱାବଧାନରେ ସମସ୍ତ କାର୍ଯ୍ୟ ଚାଲିଛି ସୁଚାରୁରୂପେ।

ଦୁଇଦିନ ପରେ ସନ୍ଧ୍ୟାରେ ଫେରି ଆସିଛନ୍ତି ଡ଼ାକ୍ତରମାନେ। ଚନ୍ଦନ ଖୁବ୍ ଦୁର୍ବଳ ହୋଇ ପଡ଼ିଛନ୍ତି।

ପରଦିନ ସକାଳ। ପ୍ରତିଦିନ ଭଳି ଚିକିତ୍ସାଳୟ ଯିବାପାଇଁ ପ୍ରସ୍ତୁତ ହେଉଥିଲେ ଡ଼କ୍ଟର ଚନ୍ଦନ। ବ୍ରେକ୍‌ଫାଷ୍ଟ ଟେବୁଲରେ ସୁପ୍ରିୟା ଓ ପିଲାମାନଙ୍କ ସହ ଏକାଠି ବସିବା ବେଳେ ଖୁବ୍ ହସୁଥିଲେ ସେ ପତ୍ନୀଙ୍କୁ କୋଉଦିନର ଏକ ସ୍ମୃତିମଧୁର ମୁହୂର୍ତ୍ତ ମନେ ପକାଇ ଦେଇ।

ବାରବର୍ଷର ପୁଅ ଅଭିଷେକ୍ ଜିଦ୍ କରୁଛି, "ଡ଼ାଡ଼ି, ଆଜି ଆମକୁ ସ୍କୁଲରେ ଛାଡ଼ିଦିଅ।"

"ଓ ସିଓର୍। ସମସ୍ତେ ବାହାରିପଡ଼। ତମେ ବି ଆସ ସୁପ୍ରିୟା। ମୁଁ ଆଜି ଟିକିଏ ଡ଼େରିରେ ଯିବି।"

ସୁପ୍ରିୟା ଖୁସି ହୋଇଥିଲେ। ପରିବାର ସହ ସମୟ କଟାଇବା ପାଇଁ କେବେ ବି ସୁଯୋଗ ମିଳେନା ଚନ୍ଦନଙ୍କୁ, ଅଥଚ ଆଜି।

"କ'ଣ ଭାବୁଚ, ଚାଇନା। ପିଲାଙ୍କୁ ଛାଡ଼ିଦେଇ ଆସି ମାର୍କେଟ ଦେଇ ଫେରିବା। ଏଇ କେତେଦିନ ହେଲା ଘରରନ୍ଧା ନ ଖାଇ ଭାରି ଖରାପ ଲାଗୁଛି। ଆଜି ଲଞ୍ଚ୍ ପାଇଁ ଖୁବ୍ ଭଲକରି ରାନ୍ଧି ରଖିଥିବ।"

ତାଙ୍କୁ ଚାହିଁ ନୀରବରେ ହସିଲେ ସୁପ୍ରିୟା। ଚନ୍ଦନଙ୍କର ଦୁଇ ଆଖିପତା ତଳର କଳାଛାଇ ତାଙ୍କ ଦୃଷ୍ଟିରୁ ବାଦ୍ ଯାଇ ନ ଥିଲେ ବି ସେଇ ମୁହୂର୍ତ୍ତର ଖୁସିକୁ ସେ ଭାଙ୍ଗିଦେବାକୁ ଚାହିଁ ନଥିଲେ। ବରଂ ମନେ ମନେ ସ୍ଥିର କରିଥିଲେ, ହସ୍ପିଟାଲ୍‌ରୁ ଫେରିଲେ ସେଦିନ ଚନ୍ଦନଙ୍କ ସ୍ୱାସ୍ଥ୍ୟ ବିଷୟରେ ହିଁ କଥାବାର୍ତ୍ତା କରିବେ।

× × × ×

ଠିକ୍ ସେଇଦିନ ସକାଳ ସାଢ଼େନଅଟା ବେଳେ ଚକ୍ଷୁଚିକିତ୍ସାଳୟର ଫାଟକ ଅତିକ୍ରମ କରି କିଛି ରାସ୍ତା ଆଗେଇବା ପରେ ଡ଼କ୍ଟର ଚନ୍ଦନଙ୍କ ପାଖକୁ ଧାଇଁ ଆସିଥିଲେ ସେଇ ଦୃଷ୍ଟିହୀନ ଯୁବକ ଦୁଇଟି।

"ନମସ୍ତେ ସାବ୍, ଆପ୍ ଆଗୟେ। ସାବ୍, ଅଭି ତକ୍ ଆଁଖ୍ ନହି ଆୟା?"

ଡ଼କ୍ଟର ଚନ୍ଦନଙ୍କ ଯନ୍ତ୍ରଣା-କାତର ମୁଖର ବିବର୍ଣ୍ଣତା ଦେଖିପାରୁ ନଥିଲେ ସେମାନେ, ସେମାନଙ୍କୁ କିଛି କହିପାରିବାର ଶକ୍ତି ନଥିଲା ତାଙ୍କର। ଛାତିରେ ହାତରଖି ସେଇ ଅସହ୍ୟ କଷ୍ଟକୁ ସହିଯିବାକୁ ସେ ପ୍ରାଣାନ୍ତକ ଉଦ୍ୟମ କରୁଥିଲେ। ଶେଷରେ ସେଇ ରାସ୍ତାରେ ଠିକ୍ ପଡ଼ିଯିବା ପୂର୍ବରୁ ସହକର୍ମୀମାନେ ତାଙ୍କୁ ଉଠାଇ ନେଇଥିଲେ।

ଚନ୍ଦନଙ୍କ ନିର୍ଦ୍ଦେଶରେ ସୁପ୍ରିୟା ଓ ପିଲାମାନଙ୍କୁ ଖବର ପଠାଇ ଷ୍ଟ୍ରେଚର୍‌ରେ ତାଙ୍କୁ ନିଆ ହୋଇଥିଲା ମୁଖ୍ୟ ଚିକିତ୍ସାଳୟର କାର୍ଡ଼ିୟାକ୍ ୱାର୍ଡ଼କୁ।

ଷ୍ଟ୍ରେଚର୍‌ରେ ଶୋଇରହି ଯିବାବେଳେ ଦୁଃଖରେ ମ୍ରିୟମାଣ ହୋଇଥିବା ସେଇ ଦୃଷ୍ଟିହୀନ ଯୁବକ ଦୁହିଁଙ୍କ ହାତ ଚାପିଧରି ଯନ୍ତ୍ରଣାବିବଶ ସ୍ୱରରେ କହିଥିଲେ ଡ଼କ୍ଟର ଚନ୍ଦନ, "ଶୋଚୋ ମତ୍, ମେରେ ଆନେ କେ ବାଦ୍ ତୁମ୍‌ହାରା ଆଖିଁକା ଇନ୍ତଜାମ୍ ଜରୁର୍ ହୋ ଯାଏଗା।"

ଷ୍ଟ୍ରେଚର୍‌ରେ ବୋହି ନେଇ ଯାଉଥିବା ଅସୁସ୍ଥ ଚନ୍ଦନଙ୍କୁ ଚାହିଁ ନୀରବ ରହିଲେ ଯୁବକ ଦୁହେଁ।

ଲକ୍ଷ୍ୟ ଥଣ୍ଡା ହୋଇ ଯାଇଥିଲା। ସୁପ୍ରିୟାଙ୍କୁ ଦେଇଥିବା ପ୍ରତିଶ୍ରୁତି ରଖି ସେ ଆଉ ଘରକୁ ଫେରିପାରି ନ ଥିଲେ। ସେଦିନ ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ ସମଗ୍ର ଚକ୍ଷୁ ଚିକିତ୍ସାଳୟଟିରେ ଦୁଃଖର ଛାଇ ଘେରି ରହିଥିଲା, ଅଶ୍ରୁସଜଳ ହୋଇ ଉଠିଥିଲେ ଡ଼କ୍ଟର ଚନ୍ଦନଙ୍କ ସହକର୍ମୀମାନେ। ଚାପାକ୍ରନ୍ଦନର କରୁଣ ମୂର୍ଚ୍ଛନାରେ ଥରି ଉଠିଥିଲା ଚିକିତ୍ସାଳୟର ପରିସର।

× × × ×

ମହାନଗରୀର ସନ୍ଧ୍ୟାଆକାଶରେ ଫୁଟି ଉଠିଥିଲେ କେତୋଟି ତାରା। ଅସଂଖ୍ୟ ବନ୍ଧୁ ପରିଜନ ଆତ୍ମୀୟସ୍ୱଜନଙ୍କ ଗହଣରେ ନୀରବରେ ଶୋଇ ରହିଥିଲେ ଡ଼କ୍ଟର ଚନ୍ଦନ।

ତାଙ୍କର ସେଇ ଶାନ୍ତ ସୁନ୍ଦର ଆଖି ଦୁଇଟିକୁ ଏକ ମୋଟା ତୁଳା ପଟିରେ ଆବୃତ କରାଯାଇଥିଲା।

ଠିକ୍ ସେଇ ସମୟରେ ବହୁଦିନରୁ ଆଖିପାଇଁ ଅପେକ୍ଷା କରିଥିବା ସେଇ ଯୁବକଦ୍ୱୟଙ୍କୁ କିଏ ଖବର ଦେଇଗଲା, ''ତୁମର ଆଖି ଆସି ଯାଇଛି।'' ▱▱▱

ଶାରଦୀୟ ଝଙ୍କାର, ୧୯୮୨

# ସୁଖୀ ମଣିଷ

ଦିନର ଆଲୁଅ ଲିଭିଲିଭି ଆସୁଥିଲା । ସନ୍ଧ୍ୟା ଆସନ୍ନ । ରିକ୍ସାଟିଏ ଧୀରେ ଧୀରେ ଆଗେଇ ଯାଉଥିଲା ଖୋଲା ଫାଙ୍କା ରାସ୍ତାରେ; ରିକ୍ସାର ଆରୋହୀ ଜଣେ ବୃଦ୍ଧ । ବୟସ ସମ୍ଭବତଃ ଅଶୀ ପଞ୍ଚାଅଶୀ ମଧ୍ୟରେ । ରାସ୍ତା ଦୁଇପାଖର ଗହଳିଆ ବଡ଼ବଡ଼ ଗଛ ସବୁ ସନ୍ଧ୍ୟା ନ ହେଉଣୁ ମଧ୍ୟ ସ୍ଥାନଟିକୁ ଅନ୍ଧାରିଆ କରି ଦେଇଥିଲେ ।

ପାଖ ଛକ ସ୍ଥାନର ନିଷ୍ପ୍ରଭ ବତୀଖୁଣ୍ଟଠାରୁ ମାତ୍ର ଅଳ୍ପ କିଛି ଦୂରରେ କିଏ ଜଣେ ଅପେକ୍ଷମାଣ ଦୃଷ୍ଟିରେ ସେଇଆଡେ ଚାହିଁ ପଚାରିଲା-

" ଏ ରିକ୍ସା ଯିବୁ, ବସ୍‌ଷ୍ଟାଣ୍ଡ ?"

ସମ୍ଭବତଃ ଆରୋହୀ ଜଣଙ୍କୁ ସେ ଦେଖି ପାରି ନ ଥିଲା ।

ରିକ୍ସାଟି ରହିଲା ବୃଦ୍ଧଙ୍କ ନିର୍ଦ୍ଦେଶରେ । ସେ ଅତ୍ୟନ୍ତ ସ୍ନେହରେ ପଚାରିଲେ, "ମା, ତୁ ବସ୍‌ଷ୍ଟାଣ୍ଡ୍ ଯିବୁ ତ ? ଆ, ମୁଁ ଛାଡ଼ିଦେବି । ମୋ ଘର ତ ସେଇ ପାଖରେ ।"

ଝିଅଟି ଇତସ୍ତତଃ ହୋଇ ଆଗକୁ ଚାହିଁ ରହିଲା, ହୁଏତ ଖାଲି ରିକ୍ସାଟିଏ ଆସି ଯାଇପାରେ । ବୃଦ୍ଧ ଜଣକ ତାର ମନୋଭାବ ବୁଝିନେବା ଭଳି କହିଲେ, "ଏ ରାସ୍ତାରେ ତୁ ରିକ୍ସା ପାଇବୁନି ଏବେ ।"

ରାସ୍ତାରେ ଚାଲି ଯାଉଥିବା ମୋଟରକାର୍‌ର ଆଲୋକରେ ସେମାନେ ପରସ୍ପରକୁ ଚାହିଁ ଦେଇଥିଲେ । ହଠାତ୍ ଭଦ୍ରଲୋକ କହି ପକାଇଲେ, "ତୁ ହରନାଥର

ଝିଅଟି ? ମୋତେ ଚିହ୍ନି ପାରୁନୁ ?''

ଝିଅଟି ବୃଦ୍ଧଙ୍କର ପାଦ ଛୁଇଁଲା ଏବଂ ବିନା ପ୍ରତିବାଦରେ ରିକ୍ସା ଉପରକୁ ଉଠି ଆସିଲା ।

ସେ ମନେପକାଇଲା ଆଉ ହଠାତ୍ ମନେ ମନେ ନିଜକୁ ପଚାରିଲା, ''ଏ କ'ଣ ସେଦିନର ସେଇ ପ୍ରଭାତ କକା ?'' ସେ ଫେରିଗଲା ପଛ ଦିନମାନଙ୍କୁ । ଦୂର ଅତୀତର ଝାପ୍‌ସା ସ୍ମୃତିମାନେ ତାକୁ ଛୁଇଁ ଯାଇଥିଲେ ।

ଏ ସହରରେ ତାଙ୍କ ଘରଠାରୁ ଦୁଇ, ତିନି କିଲୋମିଟରର ଦୂରରେ ଛୋଟ ଭଡ଼ା ଘରଟିରେ ସ୍ତ୍ରୀ ଓ ପାଞ୍ଚୋଟି ପୁଅ ଝିଅଙ୍କ ସହ ସେ ପ୍ରାୟ ରହି ଆସୁଥିଲେ । ଚାକିରୀକରି ପ୍ରଭାତ କକା ସାରା ଓଡ଼ିଶା ବୁଲି ଆସିଥିଲେ ମଧ୍ୟ ସୁନୁଖୁଡ଼ୀ ପୁଅ ଝିଅଙ୍କ ପାଠପଢ଼ା ପାଇଁ ଏ ସହର ଛାଡ଼ି ଆଦୌ ଯାଇ ପାରୁ ନ ଥିଲେ । ଅବସର ନେବା ପରେ ଫେରିଆସି ସେ ଏ ପର୍ଯ୍ୟନ୍ତ ସେଇ ଘରଟି ଛାଡ଼ି ନ ଥିବା କଥା ଜାଣିଥିଲା ଝିଅଟି । ଅବଶ୍ୟ ଏ ମଧ୍ୟରେ ଅନେକ ବର୍ଷ ବିତି ଯାଇଛି । ଝିଅଟି ବିବାହ ପରେ ଏ ସହର ଠାରୁ ପ୍ରାୟ ଦୂରରେ ରହି ଆସିଛି । କେତୋଟି ଘଟଣା ମନେ ପକାଇ ସେ ଉତ୍‌ଫୁଲ୍ଲିତ ହେଲା ।

ପୁଅ ତିନୋଟି ତାଙ୍କର ଉଚ୍ଚ ପଦବୀରେ ଅବସ୍ଥାପିତ, ଝିଅ ଦୁଇଟି ମଧ୍ୟ ବିବାହ କରି ବେଶ୍ ସୁଖରେ ଅଛନ୍ତି । କିନ୍ତୁ ସୁନୁଖୁଡ଼ୀଙ୍କର ମୃତ୍ୟୁ ପରେ ସେ ଖୁବ୍ ଏକୁଟିଆ ହୋଇ ଯାଇଛନ୍ତି । ପୁଅଝିଅମାନେ ନିଜ ସଂସାର ନେଇ ଏଭଳି ବ୍ୟସ୍ତ ଯେ ବୁଢା ବାପକୁ ପଚାରିବାକୁ ସେମାନଙ୍କର ସମୟ ନାହିଁ । ଏ ସବୁ ବୁଝିପାରି ପୂର୍ବର ସେଇ ଘରଟିରେ ଏବେ ବି ସେ ଏକାକୀ ପଡ଼ି ରହିଛନ୍ତି । ନିଜ ମା'ଙ୍କଠାରୁ ଏଇଭଳି ଭାବରେ ଶୁଣିଥିବା ଏ ସମସ୍ତ ଖବର ମନେ ପକାଉଥିଲା ଝିଅଟି ।

ତା ଚିନ୍ତାରେ ବାଧା ଦେଇ ପ୍ରଭାତ କୁମାର କହିଲେ, ''ତୋ ଲେଖା ସବୁ ପଢେ ମା', ଖୁବ୍ ପଢେ । ତୋ ବାପା ସଙ୍ଗେ କେତେ ଥର ଆଲୋଚନା କରିଛି । ତୋ ପାଇଁ ଈଶ୍ୱରଙ୍କର ଆଶୀର୍ବାଦ ରହିଛି । ତୋ ସାଧନାରେ ପୁଷ୍ପବୃଷ୍ଟି ହେଉ ମା', ତୁ ଏମିତି ଲେଖି ଚାଲୁଥା । ତୋ ବାପା କ'ଣ କମ୍ ଖୁସି ହୁଏ କି !''

ଝିଅଟି କିଛି ଉତ୍ତର ଦେଲାନି, ଅନ୍ଧାରରେ ତା ମୁହଁ ଦେଖିବା ମଧ୍ୟ

ସମ୍ଭବପର ନ ଥିଲା। ପ୍ରଭାତ କୁମାର ପଚାରିଲେ, "ତୁ ଏଠି କୁଆଡ଼େ ଆସିଥିଲୁ? ଆଜି ଭୁବନେଶ୍ୱର ଫେରିଯବୁ? ଘରେ ରହିଯାଉନୁ?"

"ନା,ଫେରିଯିବି।"

ଝିଅଟିର ଦୀର୍ଘଶ୍ୱାସର ସ୍ୱର ପ୍ରଭାତ କୁମାର ହୁଏତ ଶୁଣି ପାରିଲେ ନାହିଁ, କିମ୍ୱା ତାର ଏ ସଂକ୍ଷିପ୍ତ ଉତ୍ତରରେ ସେ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ। ସେ କହିଲେ, " ଆଲୋ ଢୁଣ୍ଡି, ବାପା, ମା'ଙ୍କୁ ଟିକେ ଦେଖିଯିବୁନି?"

ଝିଅଟି ନିରୁତ୍ତର। ସେ ଅନର୍ଗଳ କହି ଚାଲିଛନ୍ତି, "ହରନାଥକୁ ବହୁତ ଦିନରୁ ଦେଖିନି, କିମିତି ବା ଦେଖିଥାଆନ୍ତି। ଗାଁରେ ରହିଗଲି ଗୁଡାଏ ଦିନ, ଦେହ ଖରାପ ହେଲା, ସାନଝିଅଟା ଆସିଥିଲା। ତା ସାଙ୍ଗରେ ମୋତେ ନେଇଗଲା ସୁଦୂର ୟୁରୋପ। ସେ ତ ଜେନେଭାରେ ରହେ ଜାଣିଥିବୁ, ଦୁଇମାସ ପରେ ଏଇ ଏବେ ମୁଁ ଫେରିଲି।"

ରିକ୍ସା ଚାଲିଛି। ରାସ୍ତା ସଂପୂର୍ଣ୍ଣ ଅନ୍ଧକାର। କେଉଁଠି ଟ୍ରାନ୍ସଫରମର୍ ଜଳି ଯାଇଥିବାରୁ ସାରା ସହରଟିର ଏଇ ଅବସ୍ଥା। ସେଥିପାଇଁ ପ୍ରଭାତ କୁମାର ରିକ୍ସାକୁ ନଈକୂଳର ଫାଙ୍କାରାସ୍ତାରେ ଯିବାକୁ ନିର୍ଦ୍ଦେଶ ଦେଇଛନ୍ତି।

ଶୁଷ୍କ ନଦୀର ଶୀର୍ଣ୍ଣ ଜଳଧାରଟି ଫିକା ଜହ୍ନ ଆଲୁଅରେ ଧଳା ଗାରଟିଏ ଭଳି ମନେ ହେଉଛି। ଦୂର ନୀଳ ପାହାଡ,ନଈ ସେପାରି ଗାଁ, ଗହଳିଆ ଗଛର ସବୁଜ ଜଙ୍ଗଲ, ସବୁ କିଛି ଏ ଅନ୍ଧାରରେ ଅସ୍ପଷ୍ଟ।

ତେବେ ଆକାଶକୁ ଦେଖି ହେବ, ବିସ୍ତୀର୍ଣ୍ଣ ନିର୍ମେଘ ଚୈତ୍ରର ଆକାଶ ନାମହୀନ ତିଥିର ଚନ୍ଦ୍ର। ଅନେକ ତାରାଙ୍କ ରୋଷଣୀ, ପ୍ରାୟ ଜନଶୂନ୍ୟ ନଈକୂଳଟି ବିଳମ୍ୱିତ ରାତ୍ରିର ଭ୍ରମ ଆଣୁଛି। ଅକାରଣେ ଉଦାସ ହୋଇ ପଡିଲା ଝିଅଟି। ଆହୁରି କେତେ ରାସ୍ତା ଏଇଭଳି ଯିବାକୁ ହେବ। ଦିନସାରା ସେ କ୍ଳାନ୍ତ, ଶୀଘ୍ର ଫେରିଯାଇ ବିଶ୍ରାମ ନେବାକୁ ଇଚ୍ଛା।

ପ୍ରଭାତ କକା ବେଶ୍ ସୁନ୍ଦର କଥା ଗପି ପାରନ୍ତି, ଝିଅଟି ଏତିକି ମନେପକାଇ ନିଜେ ଟିକିଏ ଖୁସି ହେଲା ପରି ମନେ ହେଲା। ଏବର ଜରାଜୀର୍ଣ୍ଣ ବୃଦ୍ଧ ପ୍ରଭାତ କୁମାରଙ୍କର ସେଦିନର ସେଇ ତେଜୋଦୀପ୍ତ ଚେହେରାର ଗୋଟିଏ ଝଲକ ହୁଏତ ତାକୁ ଛୁଇଁ ଦେଇ ଗଲା।

ଛୁଟିଦିନ, ସମୟ ସକାଳ ନଅଟା, ଦଶଟା ହୋଇପାରେ। ଆକସ୍ମିକ

ଖୁସିର ଝଡଟାଏ ଭଳି ପ୍ରଭାତ କୁମାର ବାଲ୍ୟବନ୍ଧୁ ହରନାଥଙ୍କ ଘରପାଖରେ ପହଞ୍ଚି ପାଟି କରି ଉଠନ୍ତି, "ନାଥିଆ, ଘରେ ଅଛୁ କିରେ ?"

ତାଙ୍କୁ ଦେଖିଲେ ହରନାଥଙ୍କର କୈଶୋର ସତେକି ଫେରି ଆସୁଥିଲା।

ଦୁଇ ବନ୍ଧୁଙ୍କର ଉଚ୍ଛ୍ୱସିତ ବାକ୍ୟାଳାପରେ ଏଭଳି ପରିବେଶ ସୃଷ୍ଟି ହେଉଥିଲା, ଝିଅଟି ତାର ଅନ୍ୟାନ୍ୟ ଭାଇଭଉଣୀଙ୍କ ସହ ସେମାନଙ୍କ ସାମନାକୁ ନ ଆସି ଘରର ଅନ୍ତରାଳରେ ନିଜକୁ ଗୋପନ ରଖୁଥିଲା। ସେ ସମୟରେ ହରନାଥଙ୍କର ପତ୍ନୀ ପିଲାମାନଙ୍କୁ ଆଦୌ ବ୍ୟସ୍ତ ନ କରି ନିଜ ହାତରେ ଜଳଖିଆ, ଚା' ପ୍ରସ୍ତୁତ କରି, ପାନ ଭାଙ୍ଗି ପ୍ରଭାତ କୁମାରଙ୍କୁ ଖୁଆଉଥିଲେ।

ପ୍ରଭାତ କକାଙ୍କର ମା'ଙ୍କ ପ୍ରତି ଯେଉଁ ତୀକ୍ଷ୍ଣ ଥଟ୍ଟା ମଜା, ଯାପରେ ବାପାଙ୍କର ଯଥାର୍ଥ ପ୍ରତ୍ୟୁତ୍ତର ଏବଂ ପରେ ପରେ ତିନିଜଣଙ୍କର ମିଳିତ ହାସ୍ୟରୋଳ, ଆମେ ଭାଇ ଭଉଣୀମାନେ ପଢ଼ାଟେବୁଲ୍ ପାଖରେ ବସି ବେଶ୍ ଉପଭୋଗ କରୁଥିଲୁ.... ।

ଝିଅଟି ମନେ ମନେ ନିଜକୁ ଏସବୁ କହୁଥିଲାବେଳେ ତା'ଚିନ୍ତାରେ ବାଧା ଦେଇ ପ୍ରଭାତ କୁମାର କହିଲେ, ଆଜି ଟିକେ ବଜାର ଆଡ଼େ ଯିବି ଭାବିଥିଲି। କିନ୍ତୁ ଦେଖୁଛୁ ତ ଏ ଅନ୍ଧାର, ଘରକୁ ଫେରି ଆସିବା ନିରାପଦ ମନେକଲି। କ'ଣ କରିବି ମା', ମୁଁ ତ ଏକୁଟିଆ ଲୋକ, ଅବସର ନେଇ ଶାନ୍ତିରେ ଟିକିଏ ପିଲାମାନଙ୍କ ପାଖରେ ବସିବି ଭାବିଥିଲି ଯେ ସେତିକିବେଳେ ତୋ ସୁନୁଖୁଡ଼ୀ ମୋତେ ଏକା କରି ଚାଲିଗଲା। ପିଲାମାନେ ବି ଯେ ଯୁଆଡ଼େ ପାଠ, ଚାକିରୀ, ବିବାହ କରି ରହିଲେ। ମୁଁ ବୁଢ଼ାଟା ଅଲୋଡ଼ା, ଅଖୋଜା ହୋଇ ଭଡ଼ା ଘରଟାରେ ପଡ଼ିଛି...

ତୋ ବାପା ସୁଖୀ ମଣିଷ, ନିଜେ ଘରଖଣ୍ଡିଏ କରିଛି। ପିଲାମାନେ ପଛକେ ପାଖରେ ନଥାନ୍ତୁ, ସବୁବେଳେ ତୋ ମା' ତ ଅଛି।

କାଲି ଭଳି ମନେ ପଡୁଛି-ଏଇ, ଦୁଇ, ତିନିବର୍ଷ ତଳେ- ମୁଁ ଥରେ ସକାଳ ବୁଲା ଶେଷ କରି ହଠାତ୍ କ'ଣ ମନେ ହେଲା, ଚାଲି ଆସିଲି ତୁମ ଘରଆଡ଼େ।

ଫୁଲଡ଼ାଲାଟି ଧରି ମା' ତୋର ନିଶ୍ଚିନ୍ତ ମନରେ ଦିଅଁଙ୍କ ପାଇଁ ଫୁଲସବୁ ତୋଳି ରଖୁଛି ଡ଼ାଲାଟିରେ। ଡ଼ାଳଟି, ଲତାଟି ସଜାଡ଼ି ଦେଉଛି ତ, ଗଛରୁ

ଶୁଖିଲା ଫୁଲକଢ଼ ଛିଣ୍ଡାଇ ଦେଉଛି। ଦକ୍ଷିଣ ପାଖର ସେଇ ବଗିଚାକୁ ଲାଗି ବାରଣ୍ଡାରେ ଇଜିଚେୟାରଟିରେ ଆଉଜି ବସି କେଉଁ ଏକ ପୁରାତନ କବିଙ୍କର କବିତା ଆବୃତ୍ତି କରୁଥାଏ ହରନାଥ। ଆଉ ତୋର ମା' ଚାଙ୍ଗୁଡ଼ିରେ ଫୁଲ ରଖୁ ରଖୁ ପଚାରୁଥାଏ- କ'ଣ, ଆଉ କପେ ଚା' ଦରକାର କି ତୁମର ?

ମୁଁ ଉତ୍ତର ଦେଇ କହିଲି- କପେ ନୁହେଁ, ଦୁଇ କପ୍, ଭାଉଜ !

ପାଖ ଚେୟାରରେ ମୋତେ ବସିବାକୁ ନିର୍ଦ୍ଦେଶ ଦେଇ କବିତାର ସେଇ ପଂକ୍ତିଟା ମୋତେ ଆଉଥରେ ଶୁଣାଉଥାଏ ହରନାଥ। ସେତେବେଳେ ମୁଁ ପରେ ପରେ ଦୁଇ କପ୍ ଚା' ଚାରି ଛଅଖଣ୍ଡ ବିସ୍କୁଟ ନିଃଶେଷ କରି ସାରିଥାଏ।

କବିତା ଆବୃତ୍ତି ପରେ ଆମେ ସୁଖ ଦୁଃଖ ହେଉଥିଲୁ। ସକାଳର ମୃଦୁ ପବନ ଆମ ଦୁଇ ବନ୍ଧୁଙ୍କର ଦୁର୍ବଳ ଶରୀରରେ ସତେଜତା ଆଣି ଦେଉଥିଲା। ମୁଁ କହିଲି- ଭାଇ, ତୁ କପାଳିଆଟାଏ। ମୋ ପାଖରେ ଭଲା ଚା' କପ୍‌ଟିଏ କିଏ ଥୋଉଛି ?

ହରନାଥ ହସି ହସି କହିଲା- ସୁଖ ବୋଲି ଯାହା ଜନନେତ୍ରେ ଦିଶେ...। ମୁଁ କହିଲି...ଥାଉ ଥାଉ, ମୋତେ ସେଗୁଡ଼ା ଶୁଣାନା...

ଘରଟା ସବୁବେଳେ ନୀରବ, ନିଷ୍ଠକ। ଅଥଚ ସଜୀବ ଶାନ୍ତ ପରିବେଶ ହିଁ ତା'ର ସୌନ୍ଦର୍ଯ୍ୟ। ଏଇ ଦୁଇଜଣଙ୍କ ବ୍ୟତୀତ ଆଉ କେହି ନଥାନ୍ତି ସେଠାରେ। ମାତ୍ର ପୁଅ ବୋହୂ, ଝିଅ ଜୋଇଁ, ନାତି, ନାତୁଣୀ, ବନ୍ଧୁ ପରିଜନଙ୍କର ଯିବା ଆସିବା ତ ଲାଗି ରହିଥାଏ। ଆଉ ସେମାନଙ୍କୁ ନେଇ ହରନାଥ ଏଭଳି ଉତ୍‌ଫୁଲ୍ଲ ହୋଇ ଉଠନ୍ତି, ସେଇ ଭାବ ଫୁଟି ଉଠେ ତାଙ୍କର ପ୍ରତିଟି କଥାରେ।

''ତୋ ମା' କିପରି ଅଛି କହ ତ ?''

ପ୍ରଭାତ କୁମାରଙ୍କର ଏଇ କଥା ପଦକରେ ହଠାତ୍ କେଉଁ ଭାବନାରୁ ଫେରି ଆସିଲା ଝିଅଟି। ''ହଁ, ଭଲ''- ମାତ୍ର ଏତିକି କହି ସେ ପୁଣି ନୀରବ ହୋଇଗଲା। ସେ ପୁଣି କହିଲେ, ''ମୁଁ ତାକୁ ଦିନେ ବଜାରରେ ଦେଖିଲି, ଏକା ଏକା ଆସିଥିଲା। ମୁଁ ପଚାରିଲି- ଏକା କାହିଁକି ? ହରନାଥକୁ ସାଙ୍ଗରେ ଆଣିଲନି ?

ବୁଝିଲୁ ମା, ସେତେବେଳେ ଏଇ ସହରରେ ମୁଁ ପୋଲିସ୍ ଡ଼ି.ଏସ୍.ପି ଥାଏ। କ୍ଲାନ୍ତହୋଇ ଘରକୁ ଫେରିଲେ ଦିନେ ଦିନେ ତୋ ସୁନୁଖୁଡ଼ୀ ଅଭିଯୋଗ

କରେ, ‘‘ସବୁବେଳେ ବାହାରେ ବୁଲି ବୁଲି ଫେରି ଘରେ କ୍ଳାନ୍ତ ହୋଇ ଚୁପଚାପ୍ ବସି ରହିବ ? ଚାଲୁନ, ରିକ୍ସା ଖଣ୍ଡେ କରି ନଈକୂଳରେ ଘେରାଏ ବୁଲିଆସିବା ?’’

ପ୍ରଭାତ କକାଙ୍କର ପୂର୍ବର ସେଇ ଉଲ୍ଲସିତ ହସରେ ଝିଅଟି ଟିକିଏ ସଂକୁଚିତ ହୋଇ ପଡ଼ିଲା ।

‘‘ଆଲୋ ଝିଅ, ତୋ ଖୁଡ଼ୀର ଇଚ୍ଛା ସନ୍ଧ୍ୟାବେଳେ ରିକ୍ସାଖଣ୍ଡେ କରି ଆମେ ଏ ସହରଟା ପରିକ୍ରମା କରନ୍ତେ କି ?’’ ପୁଣି ସେଇ ହସ, ତା’ପରେ ଟିକିଏ ଦୀର୍ଘଶ୍ୱାସ...‘‘ସେ ଚାଲିଗଲା, ମୁଁ ତାକୁ ଖୁସିରେ ରଖିବାକୁ ସମୟ ପାଇଲିନି । ଆଚ୍ଛା ଝିଅ, ତୋ ବାପା ମା’ ଏକାଠି ବୁଲି ଯାଆନ୍ତି ନା ? ଗାଡ଼ି ମଟର ନ ହେଉ ପଛକେ ରିକ୍ସାଟିରେ ବସି ଧୀରେ ଧୀରେ ବୁଲାବୁଲି କରି ସମୟ କଟାଇବାରେ ବି ଆନନ୍ଦ ଅଛି ।

ମୁଁ ତାକୁ ପିଲାଦିନରୁ ଜାଣିଛି । ସେ ପରା ଖୁସି ଟିକକ କୁଆଡୁ ହେଲେ ଖୋଜି ଆଣେ । ହଁ, ଦୁଇଟା ମଣିଷ, ସାଙ୍ଗ ହୋଇ ବଜାର ଯାଉଛନ୍ତି, ଏକାଠି ଚା’ କପ୍ ଧରି ବସି କେତେ ଗପ ଚାଲିଛି । ଅସୁବିଧା ବି କ’ଣ ଅଛି ଯେ ? କୋଉ କଥା ପାଇଁ ତା’ର ଅନୁଶୋଚନା ନାହିଁ । ସେ ସୁଖୀ ମଣିଷ, ମୋ ଭଳି ତ ରୋଗରେ ଘାଣ୍ଟି ହେଉନି...

ପ୍ରଭାତ କୁମାର କେତେ ସମୟ ଯେ ଏଭଳି ଗପି ଚାଲିଛନ୍ତି, ଝିଅଟି ସ୍ୱପ୍ନରୁ ଉଠିବା ଭଳି ଶୂନ୍ୟ ଦୃଷ୍ଟିରେ ଆଗକୁ ଚାହିଁ ରହିଥିଲା । ବୋଧହୁଏ ସେ ସହରରେ ଥିବା ତାଙ୍କ ଘରର ରାସ୍ତାଟା ସାମନା ଛକରେ ଦେଖା ଯାଉଥିଲା ।

‘‘ତୋ ସଙ୍ଗେ ଦେଖା ନ ହୋଇଥିଲେ ମୁଁ ଏବେ ତାକୁ ସତେ କ’ଣ ଦେଖିବାକୁ ଯାଇପାରି ଥାଆନ୍ତି ? ଚାଲ୍ ଚାଲ୍, ହଠାତ୍ ଆଜି ତାକୁ ଚମକାଇ ଦେବି । ବୁଝିଲୁ ଝିଅ, ସୁଇଜରଲ୍ୟାଣ୍ଡ୍ରେ ବରଫ ପାହାଡ଼ ଉପରେ ଚଢ଼ି ଏ ବୁଢ଼ାଟା ଯେ ପୁଣି ଆସି ପହଞ୍ଚି ଯାଇଛି, ୟା’ କ’ଣ ସେ ବିଶ୍ୱାସ କରିବ ?

ସବୁବେଳେ ମୋ ସାଙ୍ଗେ ସେ ବାଜି ଲଗାଏ, କହେ: ଆରେ ପ୍ରଭାତ, ଏସବୁ ପିଆପିଇ ବାଜେ ଅଭ୍ୟାସ ତୁ ଛାଡୁନୁ କାହିଁକି ? କାଳେ ଅକାରଣେ ରୋଗ ଭୋଗିବୁ । ତା’ କଥା ଫାଙ୍କିମାରି ଉଡ଼ଉଥିଲି, କହେ- ଆରେ ମୁଁ ପରା ପୋଲିସ୍‌ବାଲା, କେମିତି ଏସବୁ ଛାଡ଼ିବି କହ ?

ତୋ ବାପାର ଉଜ୍ଜ୍ୱଳ ଚେହେରା ଦେଖିଲେ ମୋର ହିଂସା ହୁଏ । ସେ

ଠିକ୍ କହିଛି। ମୋ ଶରୀର ତ ରୋଗର ଖଣି- ଡ଼ାଏବେଟିସ, ହାଇ ବ୍ଲଡ୍ ପ୍ରେସର, ହାର୍ଟ ଆଉ ଲିଭର ଟ୍ରବଲ୍ କ'ଣ ଯେ ନ ହଉଛି !!

ଅନେକ ଦିନ ପରେ ହରନାଥକୁ ଦେଖିବି। ଏଇ ତ, ଏଇ ରାସ୍ତାରେ ଆମେ ବୁଲିଯିବା।

ଝିଅଟି କ'ଣ କହିବ, କହିବ ହୋଇ ବାରମ୍ବାର ମୌନ ହୋଇ ଯାଉଥିଲା। ଏଥର କିନ୍ତୁ ରିକ୍ସାଟା ସେଇ ରାସ୍ତାରେ ବୁଲିଯିବା ପୂର୍ବରୁ ସେ ବ୍ୟସ୍ତ ଅଥଚ ଧୀର ସ୍ୱରରେ କହିଲା, ''ଥାଉ କକା... !''

''କ'ଣ ହେଲା ମା, ଘରକୁ ଯିବୁନି କାହିଁକି ? ରାଗିଛୁ କି କାହା ଉପରେ ? ତୋ ବାପା କିନ୍ତୁ ମୋତେ ତୁ ହଠାତ୍ ଏମିତି ନେଇ ଆସିଛୁ ଦେଖିଲେ କେତେ ଯେ ଖୁସି ହେବ।''

- ବାପା ଆଉ ନାହାନ୍ତି, କକା !

- ଏଁ ?

- ଏଇ ତ, ଗତମାସ ପନ୍ଦର ତାରିଖରେ...।

- ଓଃ, ହରନାଥ ଚାଲିଗଲା...

ଝିଅଟି ବୋଧହୁଏ ପଥର ମୂର୍ତ୍ତି ହୋଇ ଯାଇଛି ଅନେକ ଦିନରୁ ! ଆଉ ବୃଦ୍ଧ ପ୍ରଭାତ କୁମାର ? ସେ କ'ଣ କାନ୍ଦୁଛନ୍ତି ?

ବରଂ ଏ ଅନ୍ଧକାର ଏମିତି ଥାଉ। □ □ □

ଚୟନିକା, ୧୯୮୪

# ପ୍ରଭାତ ପ୍ରତୀକ୍ଷାରେ

ସେତେବେଳେ ବିଶ୍ୱବିଦ୍ୟାଳୟର ଶାନ୍ତ ପରିସରରେ ଅନ୍ଧକାର ଛାଇ ଯାଇଥିଲା। ଅନେକ ସମୟ ଧରି ରାତ୍ରି ଆକାଶରେ ହସୁଥିବା କେଉଁ ଏକ ତିଥିର ଚ଼ନ୍ଦ୍ର ବାଦଲର ଅନ୍ତରାଳରେ ଛପିଯାଇ ରାତ୍ରିର ନିସ୍ତବ୍ଧତାକୁ ଆହୁରି ଗଭୀର କରି ଦେଇଥିଲା। ଅଳ୍ପ ଦୂରର ସାନ୍ଦ୍ରଦୀର୍ଘ ବୃକ୍ଷ ଶାଖାରେ ରାତ୍ରିପକ୍ଷୀର ଚିତ୍କାର। ରିଜ୍ ପାଖ ରାସ୍ତାରେ କେତେବେଳେ କିପରି ଗୋଟାଏ ଟାକ୍ସି କିମ୍ବା ଲେଟ୍ ନାଇଟ୍ ସର୍ଭିସ ବସ୍ ହଲି ହଲି ଆଗେଇ ଯାଉଥିଲା।

ଛାତ୍ରାବାସର କୋଠରୀମାନଙ୍କରେ ପ୍ରାୟ ଆଲୋକ ନିର୍ବାପିତ ହୋଇ ସାରିଛି। ତଳ ମହଲାରେ ଥିବା ଡାଇନିଂହଲ୍‌ରେ ରାତ୍ରି ଖାଇବା ଶେଷ ପରେ ଅନେକ ସମୟ ଧରି ବିଲିୟାର୍ଡ୍ ଖେଳରେ ମାତିଯାଇ ସମୟ ଭୁଲିଥିଲା ସୁଜିତ୍। ଖେଳ ବନ୍ଦ ପରେ ବିକ୍ରମର କୋଠରୀରେ ଏମିତି ଏକ ଆଲୋଚନାର ଖିଅ ହଜିଯିବା ପରେ ତା'ର ସତର୍କ ଦୃଷ୍ଟି ସଞ୍ଚାରିତ ହେଲା ହାତଘଣ୍ଟା ପ୍ରତି। ଯା'ପରେ ଖୁବ୍ ଶୀଘ୍ର ପାହାଚଶ୍ରେଣୀ ଅତିକ୍ରମ କରି ସେ ଆଗେଇବାରେ ଲାଗିଲା।

ବାରଣ୍ଡାର ଶେଷ ପ୍ରାନ୍ତରେ ଥିବା ତା'ର ସେଇ କୋଠରୀ ଉଦ୍ଦେଶ୍ୟରେ ସୁଜିତ୍ ଚାଲିବାକୁ ଆରମ୍ଭ କରିଛି। ହାତରେ ସେଦିନ ସନ୍ଧ୍ୟାର 'ଇଭିନିଂ ନିଉଜ୍ ଲେଟର୍' ଓ କେତେଖଣ୍ଡ ବହି। ଏମିତି ରାତ୍ରିରେ ତାକୁ କେବେ ବି କ୍ଳାନ୍ତ ଲାଗେନା। ବରଂ ସେ ନିଜକୁ ଖୋଜି ପାଏ, ନିଜ ପାଇଁ ଚିନ୍ତା କରିବାକୁ ପାଏ ପ୍ରଚୁର ସମୟ।

ଯାଙ୍ଗ୍‌ଲୋ ତାକୁ ଠିକ୍ ଏଇ କଥା କହେ।

“ହାଓ ଇଣ୍ଟିମେଟ୍ ଇଜ୍ ଦି ନାଇଟ୍! ଏ ରାତ୍ରିକୁ ମୁଁ ପ୍ରେମ କରି ଶିଖିଛି, ଛିତ୍।”

କିନ୍ତୁ ଯାଙ୍ଗ୍‌ଲୋ ପଢ଼େ କେତେବେଳେ? ପାଠ ସେ ଆଦୌ ପ୍ରାୟ ପଢ଼େନା, ଉଦ୍ଦେଶ୍ୟ ତା’ର ଭିନ୍ନ।

“ଓଃ! ନୋ! ଜଣେ ବିପ୍ଳବୀ ଏ ପାଠ ସବୁରୁ କ’ଣ ବା ପାଇବ? ମୋ ଦେଶର ମୁକ୍ତି ପାଇଁ ମୁଁ ଖୋଜୁଛି ରାସ୍ତା।”

ସୁଜିତ୍ ତାକୁ ବିସ୍ମୟରେ ଚାହିଁ ରହେ। ଦେଶଦ୍ରୋହୀ ଯାଙ୍ଗ୍‌ଲୋ! ଜଣେ ଭାରତୀୟ ହୋଇ ତାଙ୍କର ସେଇ ଛୋଟ ପାହାଡ଼ିଆ ରାଜ୍ୟଟିର ସ୍ୱତନ୍ତ୍ରତା ଦାବୀ କରିବାର ଯଥାର୍ଥ୍ୟ ବା କ’ଣ ଅଛି? କେବେ ଥିଲେ ରାଜା। ସେ ପ୍ରାୟ ଦୁଇଶହ ବର୍ଷ ତଳର କଥା। କିନ୍ତୁ ଏବେ କାହିଁକି ଏ ଅସନ୍ତୋଷ?

ଯାଙ୍ଗ୍‌ଲୋର ବାପା ପୋଲିସ ବିଭାଗର ଜଣେ ପଦସ୍ଥ ଅଫିସର। ଆଭିଜାତ୍ୟସମ୍ପନ୍ନ ପରିବାର। ଏକମାତ୍ର ପୁତ୍ର ଯାଙ୍ଗ୍‌ଲୋ।

ସେଇ ସହରରେ ପୁତ୍ରର ଭବିଷ୍ୟତ ବିଷୟରେ ସେ ସନ୍ଦିହାନ ଥିଲେ। ଏଇ ସ୍ୱାଧୀନତା ପାଇବାର ଇଚ୍ଛାଟା ସଂକ୍ରାମକ ରୋଗ ପରି ରାଜ୍ୟସାରା ବ୍ୟାପି ଯାଇଥିଲା। ସ୍କୁଲ, କଲେଜ, ଛାତ୍ର, ଛାତ୍ରୀ ଓ ଜନସାଧାରଣଙ୍କ ମନରେ ବିପ୍ଳବର ନିଆଁ ଜଳି ଉଠିଥିଲା। ଯାଙ୍ଗ୍‌ଲୋର ବାପା ଅନ୍ତରର ସହିତ ବିପ୍ଳବୀମାନଙ୍କୁ ସମର୍ଥନ କରୁଥିଲେ ବି ନିଜ ଚାକିରୀ ଦୃଷ୍ଟିରୁ ସେ ଅକର୍ମଣ୍ୟ ହୋଇ ଯାଇଥିଲେ। ବାଧ୍ୟତଃ ସରକାରୀ କଳର ସେ ଥିଲେ ଜଣେ ଦକ୍ଷ କର୍ତ୍ତବ୍ୟପରାୟଣ ସଚ୍ଚୋଟ ଅଫିସର୍। ନିଜର ଏକମାତ୍ର ବଂଶପ୍ରଦୀପ ଯାଙ୍ଗ୍‌ଲୋର ମନରେ କ୍ରମେ ସଂଗ୍ରାମର ବିଷ ସଞ୍ଚରି ଯାଉଥିବାର ସେ ବହୁ ଦିନରୁ ଲକ୍ଷ୍ୟ କରିଥିଲେ। ଅଗତ୍ୟା ପୁତ୍ରକୁ ଏ ସବୁରୁ ଦୂରରେ ରଖି ପ୍ରତିଷ୍ଠିତ କରିବାର ଆଶାରେ ସେ ପଠାଇଥିଲେ ରାଜଧାନୀର ଏଇ ବିଶ୍ୱବିଦ୍ୟାଳୟକୁ।

ଯାଙ୍ଗ୍‌ଲୋ କୃତୀ ଛାତ୍ର। ତେଣୁ ସ୍ଥାନ ପାଇବାରେ ତା’ର ଅସୁବିଧା ହୋଇନି। କିମ୍ବା ତା’ ତରଫରୁ ସେ କେବେ ଆପତ୍ତି କରିନି ଦୂରକୁ ଯାଇ ପଢ଼ିବାକୁ ପଡ଼ିବ ବୋଲି। ଏଇ ତା’ର ଛୋଟ ପାହାଡ଼ିଆ ସହରଟି ଛାଡ଼ି ଆସିବା ବେଳେ ମା’ଙ୍କ ଆଖିରେ ଲୁହ ଦେଖି ସେ ସାନ୍ତ୍ୱନା ଦେଇଛି, “ତୁମେ

ଖୁସି ହୁଅ, ମା'। ମୁଁ ତ କେତେ ଚାହୁଁଥିଲି ଯେ ସୁଯୋଗ। ଏଠି ରହିଲେ କ'ଣ ବା କରି ପାରି ଥାଆନ୍ତି ?''

''ତୁ ତୋ ମା'ଙ୍କୁ ମିଛ କହିଲୁ, ୟାଙ୍ଗ୍‌ଲୋ ?''

''ନୋ, ଫ୍ରେଣ୍ଡ୍, ନେଭର...ବିଲିଭ୍ ମି। ଆଇ ଜେନୁଇନ୍‌ଲି ୱାଣ୍ଟ୍ ଇଟ୍। ମୋର ଏଠି ସଂଗ୍ରାମ ପ୍ରସ୍ତୁତି କରିବାର ଆବଶ୍ୟକତା ଥିଲା। ମୋର ବନ୍ଧୁମାନଙ୍କୁ ଗଢ଼ିନେବାର ଖୁବ୍ ଦରକାର ଥିଲା ଏବଂ ଆମ ସମ୍ପର୍କରେ ଏଠାରେ କରାଯାଇଥିବା କାର୍ଯ୍ୟାନୁଷ୍ଠାନ ପର୍ଯ୍ୟବେକ୍ଷଣର ଦାୟିତ୍ୱ ମୋ ଅପେକ୍ଷା ଆଉ ଅଧିକ କିଏ ନେଇ ପାରିବ କହ ତ ?'' ଚିର ଗମ୍ଭୀର ୟାଙ୍ଗ୍‌ଲୋ ହସି ଉଠେ।

ତା'ର ଦୀର୍ଘ ଭାଷଣ ଶୁଣି ବିରକ୍ତିରେ ନୀରବ ରହେ ସୁଜିତ୍। ଇଚ୍ଛା ହୁଏ, ସେଇ ମୁହୂର୍ତ୍ତରେ ୟାଙ୍ଗ୍‌ଲୋକୁ ରୁମ୍‌ରୁ ଠେଲି ବାହାର କରି ଦେବ, କିମ୍ବା ନିଜେ ଯାଇ ୱାର୍ଡେନ୍‌ଙ୍କୁ କହି ନିଜର ରୁମ୍ ବଦଳାଇ ନେବ। କିନ୍ତୁ ସେ ଏ ସବୁ କିଛି ବି କରି ପାରେନା।

ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ୟାଙ୍ଗ୍‌ଲୋ ଯେତେବେଳେ ମାର୍କ୍‌ସିଷ୍ଟ ସାହିତ୍ୟର ମୋଟା ମୋଟା ବହି ଧରି ବସି ରହେ, ଠିକ୍ ସେତିକିବେଳେ ତା'ର ସ୍ଥିତି ପ୍ରତି ସଂପୂର୍ଣ୍ଣ ବିସ୍ମୃତ ହୋଇ ନିଜର ପାଠ୍ୟପୁସ୍ତକ ମଧ୍ୟରେ ଧ୍ୟାନସ୍ଥ ହୁଏ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ସୁଜିତ୍ ମହାପାତ୍ର। ଧ୍ୟାନ ଭାଙ୍ଗେ ୟାଙ୍ଗ୍‌ଲୋର ସ୍ପର୍ଶରେ। ହାତରେ ଫ୍ଲାସ୍କରୁ କଫି ଢ଼ାଳି ସେ ତାକୁ ବଢ଼ାଇ ଦିଏ କିମ୍ବା କେତେବେଳେ ଯଦି ସୁଜିତ୍ ହାତରେ ବହି, ଆଖିରେ ଚଷମା, ଏହିଭଳି କ୍ଲାନ୍ତ ଭାବରେ ବିଛଣାରେ ଢୁଳେଇ ପଡ଼େ, ଆଦରର ବଡ଼ ଭାଇଭଳି ୟାଙ୍ଗ୍‌ଲୋ ଧୀରେ ତା' ହାତର ବହି, କଲମ ଏବଂ ମୁଦ୍ରିତ ଆଖିରୁ ଚଷମା ଖୋଲିନେଇ ରଖିଦିଏ। ଗୋଡ଼ ପାଖରୁ କମ୍ବଳଟା ବେକ ପର୍ଯ୍ୟନ୍ତ ଟାଣି ନେଇ ଭଲ ଭାବେ ତାକୁ ଘୋଡ଼ାଇ ଦେଇ ପାଖ ଲାଇଟ୍‌ଟା ଲିଭାଇ ଦିଏ। କେବେ କିପରି ଦେହ ଖରାପ ହେଲେ ଘଣ୍ଟା ଘଣ୍ଟା ସେ ତା'ର ବିଛଣା ପାଖରେ ଜଗି ବସିଛି।

ଗତ କେତେ ମାସ ତଳେ ଏମିତି ସୁଜିତ୍ ଯେତେବେଳେ ବନ୍ଧୁମାନଙ୍କ ସହ ନାଇଟ୍ ସୋ ଦେଖିବାକୁ ପ୍ରସ୍ତୁତ ହେଉଥିଲା, ସେଦିନ ସିମଲାରେ ଖୁବ୍ ବରଫ ପଡୁଥିବାରୁ ଏ ସହରରେ ଅତ୍ୟଧିକ ଶୀତ ଅନୁଭୂତ ହେଉଥିଲା।

ୟାଙ୍ଗ୍‌ଲୋ ତାକୁ ସେମିତି ଯିବାକୁ ଦେଇ ନ ଥିଲା। ନିଜ ହାତରେ

ସୁଜିତ୍‌କୁ ପିନ୍ଧାଇ ଦେଇଥିଲା ତା'ର ସେଇ ମୂଲ୍ୟବାନ୍ ସୁନ୍ଦର ଓଭରକୋଟ୍‌ଟି।

ବନ୍ଧୁମାନେ କମେଣ୍ଟ୍ କଲେ, "ୟାଙ୍ଗ୍‌ଲୋ ଇଜ୍ ଇଓର ଗାର୍ଡ଼ିୟାନ ଥର୍ ହ୍ୱାଟ ?"

"ୟାରୋଁ, ୟେ ତୋ ମେରା ଜାନ୍‌ସେ ପ୍ୟାରା ଦୋସ୍ତ ହୈ।"

ସେମାନେ ଏକାଠି ହସି ଉଠିଲେ। ସମସ୍ତେ ଜାଣନ୍ତି, ଏ ବିଶ୍ୱବିଦ୍ୟାଳୟରେ ୟାଙ୍ଗ୍‌ଲୋ କାହାରି ବନ୍ଧୁତା ସ୍ୱୀକାର କରେନା, ସେ ନିଜ ମଧ୍ୟରେ ଥାଏ ଆବଦ୍ଧ। କେବେ କିପରି ଏଠି ପଢୁଥିବା ନିଜ ରାଜ୍ୟର ସେଇ କେତେଜଣ ଉଗ୍ରପନ୍ଥୀ ଛାତ୍ରମାନଙ୍କ ସହ ସେ ଯେତେବେଳେ ଆଲୋଚନାରେ ବ୍ୟସ୍ତ ରହେ, ସେ ହୁଏ ମୁଖର। ସେମାନଙ୍କ ନିଜ ଭାଷାରେ ଆଲୋଚନା କରୁଥିବା କଥାର ଅର୍ଥ ବୁଝି ନ ହେଲେ ମଧ୍ୟ ୟାଙ୍ଗ୍‌ଲୋର ବୁଦ୍ଧିଦୀପ୍ତ ଚକ୍ଷୁ, ଓଜସ୍ୱିନୀ କଥା କହିବାର ଭଙ୍ଗୀ ଦେଖିଲେ, ସେ ମନେହୁଏ ଆଉ କେହି ଜଣେ।

ୟାଙ୍ଗ୍‌ଲୋ ତା'ର ବନ୍ଧୁମାନଙ୍କୁ ନେଇ ଆସର ଆରମ୍ଭ କରିଦିଏ। ସୁଜିତ୍ ସେ କକ୍ଷରୁ ନିଷ୍କ୍ରାନ୍ତ ହୋଇଯାଏ। ଅନେକ ରାତିରେ ସେ ଯେତେବେଳେ ଫେରିଆସେ ସେତେବେଳେ କ୍ଳାନ୍ତ ୟାଙ୍ଗ୍‌ଲୋ ଦୁଇଟି ବିଛଣା ସଜାଡୁ ଥାଏ କିମ୍ବା ପରିତ୍ୟକ୍ତ ହୁଇସ୍କି, ରମ୍‌ର ବୋତଲ ସବୁକୁ ଝୁଡ଼ିରେ ଭର୍ତ୍ତିକରି ତା'ର ଖଟ ତଳକୁ ଠେଲି ଦେଇ ସାରିଥାଏ। ଅଧାପୋଡ଼ା ସିଗାରେଟ୍ ଓ ସିଗାରେଟ୍‌ର ଡ଼ଷ୍ଟ ସବୁକୁ ଝାଡୁରେ ସଫା କରି ଦେଇ ଗାଧୁଆ ଘରକୁ ଚାଲିଯାଏ ଧୁଆଧୋଇ ହେବା ପାଇଁ। ଫେରି ଆସି ତା'ର ସେଇ ଗଣମୁକ୍ତି ସାମ୍ମୁଖ୍ୟର କାଗଜପତ୍ର ଧରି କେତେ ସମୟ ବସି ରହେ କେଜାଣି ? ସୁଜିତ୍ କିନ୍ତୁ ସେତେବେଳକୁ ଶୋଇ ଯାଇଥାଏ।

ପରଦିନ ପ୍ରଭାତରେ କିଛି ବିଳମ୍ବରେ ଯେତେବେଳେ ସେ ବିଛଣାରୁ ଉଠି ବସେ, ତା'ର ବହୁ ପୂର୍ବରୁ ୟାଙ୍ଗ୍‌ଲୋ ଶଯ୍ୟା ତ୍ୟାଗ କରି କୋଠରୀ ସାମନାରେ ଥିବା ଖୋଲା ଛାତରେ ଜୁଡ଼ୋ, କ୍ୟାରାଟେ ଆଦି ଅଭ୍ୟାସ ଆରମ୍ଭ କରି ଦେଇଥାଏ। କେବେ କେବେ ସୁଜିତ୍‌ର ଅନୁପସ୍ଥିତିରେ ରୁମ୍‌ରେ ଥିବା ବଡ଼ ଦର୍ପଣ, କାରାଟେ-କିଙ୍ଗ୍ ବ୍ରୁସ୍ ଲିଙ୍କର ବଡ଼ ପୋଷ୍ଟର୍ ସମ୍ମୁଖରେ ତା'ର କ୍ୟାରାଟେ ପ୍ରାକ୍ଟିସ୍ ସେମିତି ଚାଲିଥାଏ।

ୟାଙ୍ଗ୍‌ଲୋର ବାପା ତା' ପାଖକୁ ପଠାନ୍ତି ପ୍ରଚୁର ଅର୍ଥ। ଚିଠିରେ ନିର୍ଦ୍ଦେଶ ଥାଏ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ମୂଲ୍ୟବାନ ପାଠ୍ୟପୁସ୍ତକ କିଣିବା ପାଇଁ। କିନ୍ତୁ ୟାଙ୍ଗ୍‌ଲୋ

ଚିଠି ଖୋଲି ମଧ ଭଲ ଭାବରେ ପଢ଼େ ନାହିଁ ଏବଂ ମାର୍କେଟ୍‌ରୁ ନେଇ ଆସେ ଅନେକ ବହି- ମାର୍କସ୍, ଲେନିନ୍ ଓ ମାଓଙ୍କର। ରାତି ରାତି ଅନିଦ୍ରା ରହି ମଜ୍ଜି ରହେ ସେ ସବୁ ମଧରେ।

ତା' ସହିତ ଯୁକ୍ତି କଲେ କହେ, ''ନୋ, ଜିତ୍, ଆମେ ଭାରତୀୟ ହୋଇ ପାରୁନା, ବ୍ରିଟିଶ୍ ଶାସନ ପରେ ଏ ଦେଶର ଶାସକ ଦଳ ଠିକ୍ ଆମ ପ୍ରତି ସେଇଭଳି ବ୍ୟବହାର ଆରମ୍ଭ କରି ଦେଇଛନ୍ତି, ଯେଭଳି ବ୍ୟବହାର ଦିନେ ସେମାନେ ପାଉଥିଲେ ଇଂରେଜ ସରକାରଙ୍କଠାରୁ, ଏବେ ବି ଏମାନେ ଆମକୁ ସନ୍ଦେହ କରନ୍ତି ପ୍ରତ୍ୟେକ କ୍ଷେତ୍ରରେ।''

''ୟୁ ଆର୍ ରଙ୍ଗ୍, ୟାଙ୍ଗ୍‌ଲୋ। ଏ ଦେଶରେ ଏଭଳି ହୋଇ ପାରେନା'', ସୁଜିତ୍ ଚିତ୍କାର କରେ।

''ତୁ ବୁଝି ପାରିବୁନି, ସୁଜିତ୍। ମୁକ୍ତିର କି ଆନନ୍ଦ! ଏ ତ ମାତ୍ର ପ୍ରସ୍ତୁତି ପର୍ବ। ସେଦିନ ଆଉ ବେଶୀ ଡ଼େରି ନାହିଁ।'' ଆଖିରେ ତା'ର ବିହ୍ୱଳତାର ଭାବ।

ବିଛଣାରେ ପଡ଼ି ରହି କୋଠରୀର ଶୂନ୍ୟ ଛାତକୁ ଚାହିଁ ଆଗାମୀ ଦିନର ସ୍ୱପ୍ନ ଦେଖୁଥିଲା ୟାଙ୍ଗ୍‌ଲୋ। ତା' ସାଙ୍ଗରେ ଅଯଥା ଯୁକ୍ତି କରିବାର ଇଚ୍ଛା ନଥାଏ ସୁଜିତ୍‌ର। ସେ କ୍ଲାସକୁ ଯିବାକୁ ପ୍ରସ୍ତୁତ ହୋଇ ସାରିଥାଏ, ତରତରରେ ଲେଖୁଥାଏ ଚିଠି ଖଣ୍ଡେ ଶୀଘ୍ର ପୋଷ୍ଟ କରିବା ପାଇଁ।

ସୁଦୂର ସହରରୁ ମା' ପାଖରୁ ଆସିଛି ଚିଠି।

ୟାଙ୍ଗ୍‌ଲୋ କହେ, ''ଜିତ୍, ୟୁ ଆର୍ ସୋ ଭେରି ହୋମ୍‌ସିକ୍!''

''ନଟ୍ ଆଟ୍ ଅଲ, ଡ଼ିଅର୍। ମା'କୁ ଲେଖୁଛି କାହିଁକି ଜାଣିଛୁ? ଏଠାରୁ ଅଠରଶହ କିଲୋମିଟର ଦୂରତ୍ୱରେ ରହି ମୋର ଏଇ ଚିଠି ଖଣ୍ଡକ ପାଇବାରେ ବିଳମ୍ବ ହେଲେ କେତେ ଯେ ବ୍ୟସ୍ତତା ତା'ର!''

''ମା!'' ମାତ୍ର ଏତିକି କହି ସୁଜିତ୍‌ର ମୁହଁକୁ ଅନେକ ସମୟ ପର୍ଯ୍ୟନ୍ତ ନୀରବରେ ଚାହିଁ ରହିଥିଲା ୟାଙ୍ଗ୍‌ଲୋ। ସେଦିନ କିନ୍ତୁ ତା' ସାଙ୍ଗରେ କଥା କହିବାର ସମୟ ଆଉ ନଥିଲା ସୁଜିତ୍‌ର। ହୁଏତ ସେ ଚାଲିଯିବା ପରେ ମୁହୂର୍ତ୍ତକ ପାଇଁ ହେଉ ପଛକେ ସେଇ ମୋଟା ବହିରୁ ମୁହଁ ଉଠେଇ ୟାଙ୍ଗ୍‌ଲୋ ଭାବିଥିବ ଛୋଟ ପାହାଡ଼ିଆ ସହରରେ ଥିବା ତା'ର ମା'ଙ୍କର କଥା, ଖୁବ୍ ମନେ ପକାଇଥିବ

ତା'ର ଏକଦା ପ୍ରଣୟିନୀ ମୋନାଲିସାକୁ। ତା'ର କୈଶୋରର ସାଥୀ ସୁନ୍ଦରୀ ମୋନାଲିସା ବିଷୟରେ କେବେ ଥରେ ଥରେ କହିଛି ସେ ସୁଜିତ୍‌କୁ।

ତା' ଟେବୁଲରେ ପଡ଼ି ରହିଥିବା ପ୍ରାୟ ତିନି, ଚାରୋଟି ମୁଦ୍ରିତ ଲଫାପା ପ୍ରତିଦିନ ତାକୁ ଅପେକ୍ଷା କରିଥାଆନ୍ତି। ନିଜ ମନ ଦୁର୍ବଳ ହୋଇଯିବା ଆଶଙ୍କାରେ ୟାଙ୍ଗ୍‌ଲୋ ସେସବୁ କେବେ ବି ଖୋଲି ଦେଖେନା।

ସୁଜିତ୍ ଚାଲିଛି। ଆଗରେ ତା' କୋଠରୀର ଝରକା ପରଦା ଦେଖା ଯାଉଛି। ଖୁବ୍ ମନେ ପଡୁଛି ୟାଙ୍ଗ୍‌ଲୋ।

ଏଇ ଅଳ୍ପ କେତେମାସ ତଳେ ସେ ଯେତେବେଳେ ଛୁଟିରେ ଘରକୁ ଆସିବାକୁ ପ୍ରସ୍ତୁତ ହେଉଥିଲା, ୟାଙ୍ଗ୍‌ଲୋ ତାକୁ ଖୁବ୍ ସାହାଯ୍ୟ କରିଥିଲା ଜିନିଷ ବନ୍ଧାବନ୍ଧି କରିବାରେ। ଷ୍ଟେସନକୁ ଯିବାପାଇଁ ବାହାରେ ଅପେକ୍ଷା କରିଥିବା ଟ୍ୟାକ୍ସିରେ ନିଜେ ନେଇ ରଖିଦେଇ ଆସିଲା ସେ ସୁଜିତ୍‌ର କିଟ୍ ବ୍ୟାଗ୍, ସୁଟ୍‌କେଶ ଇତ୍ୟାଦି। ବିଦାୟର ଶେଷ ମୁହୂର୍ତ୍ତରେ ଅଭ୍ୟାସବଶତଃ ସୁଜିତ୍ କହିଥିଲା, ''ସି ଇଉ।''

''ନୋ, ଇଟ୍ ମେ ନଟ୍ ବି...।'' ଅସ୍ପଷ୍ଟ ସ୍ୱରରେ କହିଥିଲା ୟାଙ୍ଗ୍‌ଲୋ।

ସୁଜିତ୍ କିନ୍ତୁ କଥାଟା ଠିକ୍ ଶୁଣିପାରି ତାକୁ ଏଭଳି କହିବାର କାରଣ ପଚାରିଥିଲା। କଥାଟା ବଦଳାଇବାର ସାମାନ୍ୟ ଚେଷ୍ଟା କରିଥିଲେ ବି ୟାଙ୍ଗ୍‌ଲୋର କଣ୍ଠ ଥରି ଉଠିଥିବାର ଲକ୍ଷ୍ୟ କରିଥିଲା ସେ।

ଛୁଟି ପରେ ଫେରି ଆସିଛି ସୁଜିତ୍। ଫେରି ନାହିଁ ୟାଙ୍ଗ୍‌ଲୋ। ସେ ଆଉ କେବେ ବି ଆସିବନି। ହୁଏତ ବଞ୍ଚିଥିଲେ ଦେଖା ହୋଇପାରେ, ଏଇକଥା ଲେଖି ସେ ରଖି ଯାଇଥିଲା ତା' ପାଇଁ ଖଣ୍ଡିଏ ଚିଠି।

ପରେ ଅବଶ୍ୟ ସେ କେଉଁ ନିଭୃତ ଅଞ୍ଚଳରୁ ବହୁ ବିଳମ୍ବର ବ୍ୟବଧାନରେ ଲେଖିଥିଲା ଚିଠି କେତୋଟି। ଏଇତ ମାତ୍ର ଅଳ୍ପ କେତେଦିନ ତଳେ ଲେଖିଥିଲା ''...ମୋର ଏଇ ଅଣ୍ଡରଗ୍ରାଉଣ୍ଡ୍ ବିପ୍ଳବୀ ଜୀବନ, ଏଠି ମୋର ମା', ବାପା, ପ୍ରିୟବନ୍ଧୁ ସୁଜିତ୍, ପ୍ରାଣାଧିକା ମୋନାଲିସାକୁ ଜୋର୍ କରି ମନରୁ ଠେଲି ଦେଇଛି ମୁଁ...''

ୟାଙ୍ଗ୍‌ଲୋ ଯିବାର ବହୁପୂର୍ବରୁ ଜଣେ ଜଣେ କରି ଚାଲି ଯାଇଛନ୍ତି ତା'ର ସେଇ ମୁକ୍ତି ସାମ୍ମୁଖ୍ୟର ବନ୍ଧୁମାନେ। ସେମାନେ ସମସ୍ତେ ପୋଲିସ ଗୁଳିର ଶୀକାର ହୋଇ ମୃତ୍ୟୁବରଣ କରି ସାରିଛନ୍ତି।

ସୁଜିତ୍‌ର ପାଦ ଥରି ଉଠୁଛି। ପାଖ ପାରାପେଟ୍‌କୁ ଆଉଜିଗଲା ସେ। କିଏ ସେମାନେ? ବଗିଚାର ଥାର୍‌କେରିଆ ଗଛ ପାଖରେ ହାତରେ ଟର୍ଚ୍ଚ ଜଳାଇ ଠିଆହୋଇଛି ୟାଙ୍ଗ୍‌ଲୋ। ଦେହକୁ ଆବୃତ୍ତ କରିଛି ତା'ର ସେଇ ପ୍ରିୟ କଳା ଓଭର୍‌କୋଟ୍‌ଟି। ପାଖରେ ଠିଆ ହୋଇଛନ୍ତି ତା'ର ସେଇ କମ୍ରେଡ୍ ବନ୍ଧୁମାନେ। ଅସ୍ପଷ୍ଟ ଆଲୋଚନା କାନରେ ବାଜୁଛି। ଧୀରେ ଧୀରେ ସେମାନେ ବୋଧହୁଏ ଆଗେଇ ଆସୁଛନ୍ତି।

ସୁଜିତ୍ ତରତରରେ ରୁମ୍ ଭିତରକୁ ପଶିଯାଇ କବାଟଟା ବନ୍ଦ କରିଦେଲା। ଟେବୁଲ୍ ଲ୍ୟାମ୍ପ ଜଳାଇ ପାଖ ବୋତଲରୁ କିଛି ପାଣି ପିଇଲା ସେ। ସାମନା କାନ୍ଥରେ ୟାଙ୍ଗ୍‌ଲୋର ବିଦାୟ ବେଳାର ଉପହାର କାର୍ଲ ମାର୍କସ୍‌ଙ୍କର ବିରାଟ ପୋଷ୍ଟର୍ ଫଟୋ।

ସୁଜିତ୍ ୟାଙ୍ଗ୍‌ଲୋକୁ ଭୁଲି ପାରିନି। ସେ ଦେଶ ବିରୋଧୀ ହୋଇପାରେ। ମାତ୍ର ତା'ର ବନ୍ଧୁତ୍ୱକୁ ଶ୍ରଦ୍ଧା କରେ ସୁଜିତ୍, ସମ୍ମାନ ଦିଏ ତା'ର ମାନବିକତାକୁ।

ଆଖିରେ ତା'ର ଅଜସ୍ର ନିଦ। କିନ୍ତୁ ଏ ପର୍ଯ୍ୟନ୍ତ ପଢ଼ା ହୋଇ ପାରିନି ସେଦିନ ସନ୍ଧ୍ୟାର 'ଇଭିନିଂ ନିଉଜ୍ ଲେଟର୍'। ବିଛଣାରେ ଅଧା ଆଉଜି ଲ୍ୟାମ୍ପ ତଳେ ଖୋଲି ଧରି ସମ୍ବାଦର ହେଡ୍ ଲାଇନ୍ ସବୁ ଦେଖିବାରେ ଲାଗିଲା ସେ। ସମ୍ବାଦପତ୍ରର ଶେଷ ସ୍ତମ୍ଭରେ ସେଇ ପାହାଡ଼ିଆ ସହରର ନାମ ଦେଖିବା ପରେ ସମ୍ବାଦଟି ପଢ଼ିବାକୁ ଅଧିକ ବ୍ୟଗ୍ର ହୋଇ ଉଠିଲା ସୁଜିତ୍।

ଗଣ-ମୁକ୍ତି-ସାମ୍ମୁଖ୍ୟର ଯୁବନେତା ଟି.ପି.ୟାଙ୍ଗ୍‌ଲୋଙ୍କର ପୋଲିସ ଗୁଳିରେ ମୃତ୍ୟୁ ହୋଇଯାଇଛି।

ସେଇ କେତୋଟି ଅକ୍ଷରକୁ ବାରମ୍ବାର ପଢ଼ିବା ପରେ ସୁଜିତ୍ ବୋଧହୁଏ ନିଜର ଅସ୍ତିତ୍ୱ ଭୁଲି ଯାଇଥିଲା। ୟାଙ୍ଗ୍‌ଲୋ ମରିପାରେନା! କ'ଣ ଏକ ଖିଆଲରେ କବାଟ ଖୋଲି ପାଗଳଙ୍କ ପରି ଦୌଡ଼ି ଚାଲିଗଲା ସେ ଖୋଲାଛାତର ସେଇ ପାରାପେଟ୍ ପାଖକୁ, ଯେଉଁଠି ଠିଆହେଲେ ବଗିଚାର ସେଇ ଅନ୍ଧାରିଆ କଣଟା ସେ ଭଲ ଭାବରେ ଦେଖିପାରିବ। କାହାନ୍ତି ସେମାନେ? ଏଇତ ଟିକିଏ ସମୟ ପୂର୍ବରୁ ସେମାନଙ୍କ ଆଲୋଚନା...। ବିଚାରା ୟାଙ୍ଗ୍‌ଲୋ! ସେ ହେଲେ ବଞ୍ଚିଥାଆନ୍ତା!

ଏବେ ବି ପ୍ରଭାତ ହୋଇନାହିଁ। ଅଦୂର ରିଜ୍ ପାଖ ଗହଳ ବୃକ୍ଷଶାଖାରୁ ଅନ୍ଧାର ପୋଛି ହୋଇ ଆସୁଛି। ଆକାଶରେ ନିଷ୍ପ୍ରଭ ତାରକାଙ୍କ ଗହଣରେ ଜଳି

ଉଠୁଛି ପାହାନ୍ତା ପହରର ଉଜ୍ଜଳ ନକ୍ଷତ୍ରଟି । ତାକୁ ହିଁ ଅପଲକ ନେତ୍ରରେ ଚାହିଁ ରହିଥିଲା ସୁଜିତ୍ । ଆଖିରେ ତା'ର ପାଣି ଭର୍ତ୍ତି ହୋଇ ଯାଇଥିଲା ।

ରୁମ୍‌ର କବାଟ ପାଖକୁ ଫେରି ଆସି ଠିକ୍ ପରଦାଟା ଆଡ଼େଇ ଦେଇ ସେ ବିସ୍ମିତ ହୋଇଗଲା । କିଏ ? ଯାଙ୍ଗ୍‌ଲୋ ? 'ଇଭିନିଂ ନିଉଜ୍'ର ସମ୍ବାଦ ତେବେ ମିଥ୍ୟା ? ପାଦରୁ ମୁଣ୍ଡ ପର୍ଯ୍ୟନ୍ତ କମ୍ବଳ ଆବୃତ କରି ଶୋଇ ଯାଇଛି ଯାଙ୍ଗ୍‌ଲୋ, ଠିକ୍ ସେଇ ଖଟରେ, ଯେଉଁଠି ସବୁବେଳେ ବଧିର ପାହାଡ଼ ପାଖରେ ସେ ପଡ଼ିରହିଥାଏ ।

ସୁଜିତ୍ ଖୁସିରେ ଚିତ୍କାର କରି ଉଠିଲା, "ଯାଙ୍ଗ୍‌ଲୋ ?...ତୁ କେତେବେଳେ ଆସିଲୁ ଯାଙ୍ଗ୍‌ଲୋ ?" କମ୍ବଳ ସ୍ପର୍ଶ କରି ଶାୟିତ ତରୁଣର କାନ୍ଧକୁ ହଲାଇଦେଲା ସେ ।

ତତ୍‌କ୍ଷଣାତ୍ ଦେହରୁ କମ୍ବଳଟା ଖୋଲିଦେଇ ସୁଜିତ୍‌କୁ ଆଶ୍ଚର୍ଯ୍ୟ ଆଖିରେ ଚାହିଁ ରହିଥିବା ତରୁଣଟି କିନ୍ତୁ ଯାଙ୍ଗ୍‌ଲୋ ନ ଥିଲା ।

ନବାଗତ ରୁମ୍ ମେଟ୍‌ଟିକୁ କିଛି କହିବା ପୂର୍ବରୁ ସୁଜିତ୍‌ର ଦୃଷ୍ଟି ପ୍ରସାରିତ ହୋଇଥିଲା ପାଖ କାନ୍ଥକୁ ।

ଯାଙ୍ଗ୍‌ଲୋ ପ୍ରଦତ୍ତ କାର୍ଲ ମାର୍କସଙ୍କର ସେଇ ବଡ଼ ପୋଷ୍ଟର ଫଟୋଟା ତଥାପି ସେଠାରେ ଲାଖି ରହିଥିଲା । ▱▱▱

'ବିଷୁବ' ଝଙ୍କାର, ୧୯୮୧

# ହଜିଯାଇଥିବା ଲୋକଟି

ତୁମକୁ ନେଇ ଗପଟିଏ ଲେଖିବି ବୋଲି ଅନେକ ଦିନରୁ ଭାବୁଛି। ଯଦି ସତରେ ମୁଁ କିଛି ଲେଖିଦିଏ ପ୍ରକୃତରେ ସେ କ'ଣ ଗପଟିଏ ହେବ ନା ତୁମ-ମୋ ସମ୍ପର୍କର ସେଇ ସୁନ୍ଦର ମୁହୂର୍ତ୍ତମାନଙ୍କର ଦିନଲିପି ଲେଖିଦେଇ ମୁଁ ନିଜପାଇଁ ଏକାନ୍ତ ଭାବରେ ସାଇତି ରଖିବା ପାଇଁ ଲେଖାଟିଏ ପ୍ରସ୍ତୁତ କରିଦେବି ?

ଆଜି ତୁମ କଥା ଭାବିବା ବେଳେ ବାରମ୍ବାର ଏଇ କଥା ମୋ ମନକୁ ଆସୁଛି। ଏମିତି ହେଲା କାହିଁକି, ସଂଦୀପ। ଦେଖାହେଲେ ଏଇ ଗୋଟିଏ କଥା ପଚାରିବାକୁ ମୁଁ ତୁମକୁ ଅପେକ୍ଷା କରିଛି।

ପରିଚୟ ତ ଅନେକ ଦିନର, ଅନେକ ବର୍ଷର ! ସେତେବେଳେ ତୁମେ ପ୍ରାୟ ଅଧିକାଂଶ ଦିନ ଆମ ଘରକୁ ଆସୁଥିଲ ଭାଇଙ୍କର ଅନ୍ୟ କେତେଜଣ ଘନିଷ୍ଠ ବନ୍ଧୁଙ୍କ ଭଳି। ଭାଇ ଘରେ ଅଛନ୍ତି କି ନାହିଁ, ପାଣି ବା ଚା' ଦରକାର ହେଲେ ମୁଁ ହୁଏତ ତୁମ ସହିତ କଥା କହିଥିବି, ଆଜି ଏସବୁ ମନେ ବି ପଡ଼େନି।

ସଂଦୀପ, ସେ ଦିନସବୁ ବରଂ ଭଲ ଥିଲା। ଆମର ପରସ୍ପର ପ୍ରତି କିଛି କାମନା ନ ଥିଲା, ଖୁବ୍ ପାଖରେ ଥାଇ ମଧ୍ୟ ଆମେ କେହି କାହାରିକୁ ଚାହୁଁ ନ ଥିଲେ। ଭାବିଲେ ହସଲାଗେ, ଭାଇ ତାଙ୍କର ଏଭଳି ବନ୍ଧୁମାନଙ୍କ ସହ ତାଙ୍କ ମିନି ଗବେଷଣାଗାର ମଧ୍ୟକୁ ଚାଲି ନ ଯିବା ପର୍ଯ୍ୟନ୍ତ ଆମେ ସାନ ସାନ ଭାଇଭଉଣୀମାନେ ଅତିଷ୍ଠ ହୋଇ ଉଠିଥିଲୁ। ଅନେକ କାମର ବରାଦ

ଆମ ଖେଳରେ ବାଧା ସୃଷ୍ଟି କରୁଥିଲା।

ସନ୍ଦୀପ, ସାନ ବେଳର ସେଇ ସମୟ ପ୍ରତି ଆଜି ଈର୍ଷା ହେଉଛି।

ତୁମ ସହ ଟେଲିଫୋନ୍‌ରେ କଥାବାର୍ତ୍ତା ନିହାତି ଫରମାଲ୍, ଆମ ଫ୍ୟାକ୍ଟରୀର କେତେଜଣ ଶ୍ରମିକଙ୍କ ଅସୁସ୍ଥତା ନେଇ। ସୂର୍ଯ୍ୟ ଖୁବ୍ ବ୍ୟସ୍ତ, ତାଙ୍କୁ ସାହାଯ୍ୟ କରିବାକୁ ମୁଁ ଫୋନ୍ ଉଠାଇଲି। ତୁମେ ସୂର୍ଯ୍ୟଙ୍କୁ ଆସିବାକୁ କହିଲ। ବାସ୍-ସେଦିନ ସେତିକି।

ତୁମ ପାଖରୁ ଫେରିଆସି ସୂର୍ଯ୍ୟ ଯେଉଁ ପରିଚୟ ଦେଲେ, ମୁଁ ମନେ ପକାଇବାକୁ ଚେଷ୍ଟା କଲି ସୁଦୂର ଅତୀତକୁ।

ତୁମ ସହ ପରିଚିତ ହେବା ପରେ କେତେଥର ଦେଖା ହୋଇଛି। ଫୋନ୍‌ରେ ବି କଥାବାର୍ତ୍ତା କରିଛି। ପୂର୍ବଦିନମାନଙ୍କୁ ମନେ ପକାଇ ବିଦେଶରେ ନାଗରିକତ୍ୱ ଗ୍ରହଣ କରି ରହିଯାଇଥିବା ମୋର ଭାଇଙ୍କ ପ୍ରସଙ୍ଗ ନେଇ ଏମିତି କେତେ ଯେ କଥାବାର୍ତ୍ତାର ସୂଅ ଛୁଟିଛି। ଆଉ ଏ ସହରରେ ମୋରି ସହାୟତାରେ ଗଢ଼ି ଉଠିଥିବା ଅବହେଳିତ, ଅସହାୟ ଶିଶୁମାନଙ୍କୁ ନେଇ କେତୋଟି ସଂସ୍ଥାକୁ ଆବଶ୍ୟକ ବେଳେ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଛ ତୁମେ।

ତୁମେ ଆସିଛ, ଅନେକ ଥର, ସୂର୍ଯ୍ୟଙ୍କର ଅନେକ ବନ୍ଧୁଙ୍କ ଭଳି। କେବେ କିପରି ନିମନ୍ତ୍ରିତ ହୋଇ ଆସିଛ ସୂର୍ଯ୍ୟଙ୍କ ଜନ୍ମଦିନରେ, ଆମ ବିବାହ ବାର୍ଷିକୀରେ। ଅଜସ୍ର ଆନନ୍ଦ ଉଲ୍ଲାସ ମଧ୍ୟରେ କଟିଛି ଉତ୍ସବ ଦିନସବୁ। ଦେଖା ହୋଇଛି କ୍ଲବରେ, ବାହାରେ ଆଉ କେଉଁଠି କେବେ।

କିନ୍ତୁ ଏ ସବୁ ମଧ୍ୟରେ ତୁମେ ତଥାପି ଦୂରରେ ରହିଛ ସନ୍ଦୀପ, ଭାବିଲେ ବିଶ୍ୱାସ ହୁଏନି ଆଜି। ଆଉ ଏବେ ଅନେକ ସମୟରେ ମୁଁ ନିଜକୁ ପଚାରେ, ଏମିତି ହେଲା କାହିଁକି? ହଜିଯାଇଥିବା ଏଇ ମଣିଷଟି ପାଇଁ କାହିଁକି ବା ଏତେ ଯନ୍ତ୍ରଣା ମୋର?

ଆମ ପରିବାରର ଅନେକ ବନ୍ଧୁଙ୍କ ମଧ୍ୟରୁ କାହିଁକି ତୁମେ ଘନିଷ୍ଠ ହୋଇ ଉଠିଲ? କେବେ ଚିନ୍ତା କରିଛ?

ତା'ର ଉତ୍ତର ମୁଁ ସୂର୍ଯ୍ୟଙ୍କୁ ଦେଇଛି, ସେ ମୋତେ ଆଶ୍ଚର୍ଯ୍ୟରେ ଚାହିଁ ରହିଛନ୍ତି।

ମୁଁ କହିଛି, ''ଆରେ, ଚାହିଁଛ କ'ଣ? ମୋତେ ସନ୍ଦୀପକୁ ଭଲ ଲାଗେ।''

ମୁଁ ଏକ ବ୍ୟତିକ୍ରମ। ମୋତେ କାହାକୁ ଭଲଲାଗେ ନାହିଁ। ଏକଥା ଅନେକ ଥର ସୂର୍ଯ୍ୟ କହିଥିବେ।

ମୋ ଉତ୍ତରରେ ସେ ହସିଦେଇ କହିଲେ, "ଠିକ୍ ଅଛି, ଏଥର ମୋତେ ଆଉ ହଇରାଣ କରିବ ନାହିଁ ତ?"

ହଁ ସଂଦୀପ, ତାଙ୍କୁ ମୁଁ ବାସ୍ତବରେ ହଇରାଣ କରେ। ସବୁବେଳେ ତାଙ୍କ କାମ ନେଇ ସେ ବ୍ୟସ୍ତ ରହିବାରେ ତାଙ୍କର ଆନନ୍ଦ।

ବାହାରୁ କ୍ଲାନ୍ତ ହୋଇ ଫେରି ଆସିବା ପରେ ମଧ୍ୟ ସେ ଘର ଭିତରକୁ ଆସି ପାରନ୍ତି ନାହିଁ। ଘର ସଂଲଗ୍ନ ତାଙ୍କ ଅଫିସ୍ ଘରେ ତଥାପି ବସି ରହନ୍ତି ଅନେକ ରାତ୍ରି ପର୍ଯ୍ୟନ୍ତ।

ଏକା ଏକା ଯେ ମୋତେ ଖୁବ୍ ଖରାପ ଲାଗେ, ଏକଥା ବୁଝିଲେ ମଧ୍ୟ ସେ ଭୁଲିଯାଆନ୍ତି। ଶେଷରେ ଇଣ୍ଟରକମ୍ ଡ଼ାୟଲ୍ କରି ମୁଁ ତାଙ୍କୁ ବାଧ୍ୟ କରି ଉଠାଇ ଆଣେ।

ସେ ବିରକ୍ତ ହୁଅନ୍ତି। କିନ୍ତୁ ମାନି ଯାଆନ୍ତି। ମୁଁ ଆଉ କ'ଣ କରନ୍ତି? ବିଲୁ, ରାଜୁ, ବୁଲ୍‌ବୁଲ୍ ପୁଅ ଝିଅ ତିନୋଟି। ସ୍କୁଲ ଜୀବନ ଆରମ୍ଭ ନ ହେଉଣୁ ସେମାନେ ବାହାରେ ରହି ପଢ଼ି ଆସିଲେ। ଏବେ ଅଳ୍ପଦିନ ମଧ୍ୟରେ ସେମାନଙ୍କର କଲେଜ ଶିକ୍ଷା ଶେଷ ହୋଇଯିବ। ତଥାପି ବାହାରେ ବାହାରେ ପିଲାଙ୍କର ସମୟ କଟିଲା, ସେମାନଙ୍କୁ ଛାଡ଼ିଦେଇ ସେ ନିଶ୍ଚିନ୍ତ ହୋଇଗଲେ, କିନ୍ତୁ କେବେ ମୋ କଥା ଭାବିଛନ୍ତି?

ସଂଦୀପ, ପ୍ରାଚୁର୍ଯ୍ୟ ମଧ୍ୟରେ ଖୋଜୁଥିବା ଜିନିଷଟି ସହଜେ ମିଳେ ନାହିଁ। ଏକଥା ସୂର୍ଯ୍ୟ କେବେ ବି ବୁଝିବେନି। ମୁଁ ଅନେକ ଥର କହିଛି ତାଙ୍କୁ-ଟଙ୍କାଟା କ'ଣ ଜୀବନର ସବୁ କିଛି?

ସୂର୍ଯ୍ୟ ବ୍ୟସ୍ତ ହୁଅନ୍ତି ପିଲାମାନଙ୍କର ଭବିଷ୍ୟତ କଥା ଭାବି, ଏବେ ତ ପ୍ରତିକ୍ଷେତ୍ରରେ ପ୍ରତିଯୋଗିତା ଚାଲିଛି। କିଏ ଜାଣେ ଆମ ପିଲାଏ କୋଉଠି ପହଞ୍ଚିବେ!

ସଂଦୀପ, ଆମେ ଏଇ ମଣିଷମାନେ କେଡ଼େ ବୋକା ସତରେ! ଚିରବ୍ୟସ୍ତ, ଅସ୍ଥିର ହୋଇ ବର୍ତ୍ତମାନକୁ ତ ଅଶାନ୍ତିମୟ କରୁ, ପୁଣି ଭବିଷ୍ୟତ କଥା ଭାବି ମିଛଟାରେ ଆତଙ୍କିତ ହୋଇଉଠୁ। କିଛିଦିନ ପରେ ଭବିଷ୍ୟତ ଯେତେବେଳେ

ବର୍ତ୍ତମାନ ହୁଏ, ଅତୀତକୁ ଦୃଷ୍ଟି ଫେରାଇ ହାତରୁ ଛାଡ଼ି ଦେଇଥିବା ସମୟ ପାଇଁ ଅନୁତାପ କରିବା ଛଡ଼ା ଉପାୟ ନ ଥାଏ ।

ଏଇଭଳି କେତେ କଥା ନେଇ ସୂର୍ଯ୍ୟଙ୍କ ସାଙ୍ଗରେ ମୋର ଅନେକ ସମୟରେ ମତଭେଦ ହୁଏ ।

କିଛିଦିନ ତଳେ ସୂର୍ଯ୍ୟ ଦିନେ ବିରକ୍ତ ହୋଇ କହିଲେ, ''କ'ଣ ତୁମେ ଚାହୁଁଛ ?''

''କଥା ଦିଅ, ମୁଁ ଯାହା କହିବି, ରଖିବ ନିଶ୍ଚୟ ।''

ସୂର୍ଯ୍ୟ ଉତ୍ତର ଦେଲେ ନାହିଁ। ଏତେ ସକାଳୁ ତାଙ୍କ ନିଦଟା ଭାଙ୍ଗିଯାଇଥିବାରୁ ସେ ଆଉ ଥରେ ଶୋଇବାକୁ ଉପକ୍ରମ କରୁଥିଲେ ।

ମୁଁ ତାଙ୍କ ପାଖକୁ ଘୁଞ୍ଚିଯାଇ କହିଲି, ''ଏତେ ସୁନ୍ଦର ସକାଳଟାରେ ଶୋଇ ରହିଛ କ'ଣ ? ଆସ ବାହାରେ ଠିଆହେବା, କାଲିର ସେଇ ଗୋଲାପ କଢ଼ି ସବୁ ଫୁଟିଯାଇ ବେଶ୍ ସୁନ୍ଦର ଦିଶୁଛନ୍ତି ।''

ସୂର୍ଯ୍ୟ ଆଖି ବୁଜି ଧୀର ସ୍ୱରରେ ଉତ୍ତର ଦେଲେ, ''ଶିଖା, ବୟସ କେତେ ହେଲା ?''

''ତୁମ ପାଖରେ ମୋର ବୟସର ପ୍ରଶ୍ନ ଉଠୁଛି କାହିଁକି ?''

''ଖୁବ୍ ଦୁଃଖିତ, ଏଥର ମୋତେ ଟିକେ ଶୋଇବାକୁ ଦିଅ ।''

''ନା, ଆଦୌ ନୁହେଁ। ଚାଲନା, ଏଇ ସକାଳୁ ଲଙ୍ଗ୍ ଡ୍ରାଇଭ୍‌ରେ ଟିକେ ଯିବା ।''

ସୂର୍ଯ୍ୟ ସତକୁ ସତ ରାଗିଗଲେ। ବିଛଣାରୁ ଉଠିଯାଇ ଗାଧୁଆ ଘର ଭିତରକୁ ଯିବାବେଳେ ମୋର ବିଶ୍ୱାସ ଥିଲା, ସେ ଯିବାକୁ ରାଜି ହୋଇଛନ୍ତି ।

ଝରକା ପାଖର ଗୋଲାପମାନେ ପ୍ରଭାତର ମୃଦୁ ସମୀରଣରେ ସୌଖୀନ୍ ରାଜକନ୍ୟା ଭଳି ହସି ଉଠୁଥିଲେ। ସେଇ ପାଖରେ ଠିଆହୋଇ ମୁଁ ନିଦ୍ରିତ ସହରକୁ ଚାହିଁ ରହିଥିଲି ।

ଠିକ୍ ଏତିକିବେଳେ ପର୍ଦ୍ଦାକୁ ଦୁଇପାଖରୁ ଭଲ ଭାବରେ ଟାଣି ନେଇ ଘରଟା ଅନ୍ଧାର କରିନେଲେ ସୂର୍ଯ୍ୟ, କେତେ ଶୀଘ୍ର ମୋତେ ବାଧ କରି ବିଛଣାରେ ଶୁଆଇ ଦେଲେ ସେ !

ସନ୍ଦୀପ, ଏମିତି କେତେ ସକାଳ ବୟସ୍କ ହୋଇ ଯାଇଛି। କେତେ

ସନ୍ଧ୍ୟା ହୋଇଛି ରାତ୍ରି। କେତେ ଗଭୀର ରାତ୍ରିରେ ନିଜର ଦୀର୍ଘଶ୍ୱାସ ଶୁଣି ମୁଁ ଅସ୍ଥିର ହୋଇଛି।

ତଥାପି କେବେହେଲେ ସୂର୍ଯ୍ୟଙ୍କ ସମ୍ପର୍କରେ ତୁମ ସଙ୍ଗେ ମୋର ଏଭଳି କିଛି କଥାବାର୍ତ୍ତା ହୋଇନି ତ! ମୁଁ ଚାହେଁ, ମୋର ଏହି ଛୋଟ ସଂସାରଟି ଚିର ସୁନ୍ଦର, ସୁଦୃଢ଼ ରହୁ, ତାଙ୍କପାଇଁ ମୋ ମନରେ ଟିକିଏ ବି ତିକ୍ତତା ନ ରହୁ।

ଏସବୁ ସତ୍ତ୍ୱେ କେବେ କିପରି ସେ ଏମିତି ଅସହ୍ୟ ହୋଇ ଉଠନ୍ତି; ମନ ହୁଏ ଏ ସ୍ୱାମୀ, ସନ୍ତାନ, ସଂସାରର ମାୟା ତ୍ୟାଗ କରି ମୁଁ କୁଆଡ଼େ ଚାଲିଯାଇ ପାରନ୍ତି କି?

ପିଲା ତିନିଜଣଙ୍କୁ ବୋର୍ଡିଂ ସ୍କୁଲ ପରେ ପରେ କଲେଜ ହଷ୍ଟେଲରେ ଛାଡ଼ିଦେବା ପରଠାରୁ ମୁଁ କେତେ ଏକା ହୋଇ ଯାଇଛି। ତେବେ ଠିକ୍ ଏକା ହୋଇ ଯାଇଛି ବୋଲି କୁହାଯାଇପାରିବନି।

ଏ ମଧ୍ୟରେ ଅସହାୟ ପିଲାମାନଙ୍କୁ ନେଇ ଯେଉଁ କାମ ମୁଁ ହାତକୁ ନେଇଛି, ସେଥିରେ ତୁମର ସାହାଯ୍ୟ ହିଁ ମୁଖ୍ୟ, ଏକଥା ମୁଁ କେବେହେଲେ ଅସ୍ୱୀକାର କରିବି ନାହିଁ।

ସଂଦୀପ, ଡ଼ାକ୍ତର ତ ଅନେକ ଅଛନ୍ତି। ସୂର୍ଯ୍ୟଙ୍କର ଅନେକ ଡ଼ାକ୍ତର ବନ୍ଧୁ ବି ଅଛନ୍ତି। କିନ୍ତୁ ଏଭଳି ଆନ୍ତରିକତା ମୁଁ କୋଉଠି ପାଇନି।

ତୁମର ବିଖ୍ୟାତ ନର୍ସିଙ୍ଗ୍ ହୋମ୍, ଯେଉଁଠାରୁ ତୁମର ସହଯୋଗୀ ଚିକିତ୍ସକମାନେ ରୋଗୀମାନଙ୍କର ଚିକିତ୍ସା ପାଇଁ ମୋଟା ଅର୍ଥର ପ୍ରାପ୍ୟ ଦାବୀ କରନ୍ତି, ସେଠାରେ ଏଇ ଦରିଦ୍ର ଅସହାୟ ଶିଶୁମାନଙ୍କୁ ପଇସାଟିଏ ବି ନ ନେଇ ସେମାନେ ଚିକିତ୍ସା କରିନ୍ତି ତୁମରି ନିର୍ଦ୍ଦେଶରେ।

ତୁମେ ସେମାନଙ୍କର ସୁବିଧା, ଅସୁବିଧା ବୁଝିଛ। ତୁମ ପାଖକୁ ଆସୁଥିବା ସାମ୍ପଲ୍ ଔଷଧ ଓ ଅନ୍ୟାନ୍ୟ ବନ୍ଧୁମାନଙ୍କଠାରୁ ଔଷଧମାନ ସଂଗ୍ରହ କରି ପଠାଇ ଦେଇଛ, ମୋ ହାତରେ ଧରାଇଛ ତୁମ ଧନୀ ରୋଗୀମାନଙ୍କଠାରୁ ଅଜସ୍ର ଅର୍ଥର ଦାନ।

ସେଦିନ ମୁଁ ଖୁବ୍ ହଇରାଣରେ ପଡ଼ି ଯାଇଥିଲି। ଦିନ ପ୍ରାୟ ବାରଟା। ମୁଁ ଫେରୁଥିଲି ସହର ତଳି ଏକ ବସ୍ତି ପାଖରୁ।

ରାସ୍ତାରେ ଅଜସ୍ର ଜନଗହଳି ମଧ୍ୟରେ ରକ୍ତାକ୍ତ ହୋଇ ପଡ଼ି ରହିଥିବା କିଶୋରଟିକୁ ଛାଡ଼ି ମୁଁ ଯାଇପାରୁ ନଥିଲି। ଦୁର୍ଘଟଣା ଘଟାଇ ଚାଲି ଯାଇଥିବା ଜିପ୍‌ଟି ସମ୍ପର୍କରେ ସେମାନେ କଥାବାର୍ତ୍ତା କରୁଥିଲେ, ଅଥଚ ପିଲାଟିକୁ ଡ଼ାକ୍ତରଖାନା ନେବାକୁ କେହି ସାହସ କରୁ ନ ଥିଲେ।

ଏତିକିବେଳେ ତୁମେ ଖୁବ୍ ମନେ ପଡ଼ିଲ। ପାଖ ଦୋକାନରୁ ତୁମ ନମ୍ବର ଡ଼ାୟଲ୍ କରିବାର କେତେ ମିନିଟ୍ ମଧ୍ୟରେ ତୁମେ ପହଞ୍ଚି ଯାଇଥିଲ। ଦେବଦୂତ ଭଳି କିଶୋରଟିକୁ ଉଠାଇ ନେଇଥିଲ ତୁମରି ଗାଡ଼ିରେ। ସେତେବେଳେ ଗୋଟିଏ ବଡ଼ ଧରଣର ଅସ୍ତ୍ର ଚିକିତ୍ସା ସାରି ତୁମେ ବୋଧହୁଏ ଘରକୁ ଯିବାକୁ ପ୍ରସ୍ତୁତ ହେଉଥିଲ। ଅଥଚ ସେଇ ମୁମୂର୍ଷୁ କିଶୋରଟିକୁ ଜୀବନ ଦେବାପାଇଁ ଆଉ ଥରେ ତୁମକୁ ଅସ୍ତ୍ରଚିକିତ୍ସା କୋଠରୀ ମଧ୍ୟକୁ ଯିବାକୁ ପଡ଼ିଲା।

ଏ ଘଟଣା ପରେ ସୂର୍ଯ୍ୟଙ୍କୁ ବୋଧହୁଏ ମୁଁ ଆହୁରି ଥରେ କହିଥିବି, ''ସଂଦୀପ୍ ଖୁବ୍ ଭଲ। ଡ଼ାକନା ଆଜି ତାଙ୍କୁ।''

ସେଦିନ ସନ୍ଧ୍ୟାରେ ତୁମେ ଖୁବ୍ ଶୀଘ୍ର ଆସି ପହଞ୍ଚି ଯାଇଥିଲ। ଆକାଶରେ ଅଦିନ ବର୍ଷା।

ଏଭଳି ଆକସ୍ମିକ ପାଗ ପାଇଁ ଆମେ ବୋଧହୁଏ କେହି ପ୍ରସ୍ତୁତ ନ ଥିଲୁ। ସୂର୍ଯ୍ୟ ତୁମକୁ ନ ଛାଡ଼ିବାକୁ ଫୋନ୍‌ରେ ନିର୍ଦ୍ଦେଶ ଦେଇଥିଲେ। ମୋ ଟେଲିଫୋନ୍ ପାଇବା ପରେ ତୁମ ସହଯୋଗୀ ଡ଼ାକ୍ତରଙ୍କ ହାତରେ ସମସ୍ତ ଦାୟିତ୍ୱ ଦେଇ ତୁମେ ଯେ ସତରେ ଆସି ପହଞ୍ଚିବ, ଏ ବିଶ୍ୱାସ ମୋର ନ ଥିଲା।

ମୋ ଆଖିରେ ଅନେକ ପ୍ରାଚୁର୍ଯ୍ୟ ତୁମକୁ ସଂକ୍ରମିତ କରିଥିଲା।

'ଶୀଘ୍ର ଫେରି ଆସୁଛି' କହି ତଥାପି ଫେରି ନ ଥିଲେ ସୂର୍ଯ୍ୟ। ଆମ ବୈଠକ ଘରେ ତାଙ୍କୁ ହିଁ ଅପେକ୍ଷା କରି ରହିଥିବା ବେଳେ ହୁଏତ ଖୁବ୍ କଥା ନ ଗପିବାର ନିଷ୍ପତ୍ତି ନେଇଥିଲ ତୁମେ।

ନୀରବତାରୁ ମୁକ୍ତି ପାଇବା ପାଇଁ ଚା' ଆଣିବା ପାଇଁ ଉଠିଯିବା ବେଳେ ତୁମେ ମୋତେ ବାରଣ କରିଥିଲ।

''ନା, ଚା' ଖାଇବି ନାହିଁ। ଏମିତି ଭଲ ଲାଗୁଛି।'' ତୁମେ ହସିଲ। କେତେବେଳେ ଝରି ଯାଉଥିବା ବର୍ଷା ଆଉ ମୋତେ ଚାହିଁ କହିଲ, ''ଏଇ

ଏମିତି ତୁମ ପାଖରେ ବସିବାକୁ ଖୁବ୍ ଭଲ ଲାଗୁଛି, ଶିଖା।'' ତୁମକୁ ନୂଆ କରି ଚିହ୍ନିବା ଭଳି ମୁଁ ଚାହିଁ ରହିଥିଲି।

ଏ ବର୍ଷା ମୋତେ ବି ଖୁବ୍ ଭଲ ଲାଗୁଥିଲା। ମୁଁ କହିଲି, ''ସୂର୍ଯ୍ୟ ଫୋନ୍ କରିଥିଲେ, ଆଜି ସେ ଶୀଘ୍ର ଫେରି ଆସିବେ।''

ମୋ କହିବା ଶେଷ ନ ହେଉଣୁ ସତକୁ ସତ ସୂର୍ଯ୍ୟ ପହଞ୍ଚି ଯାଇଥିଲେ। ସେ ଆସିବା ପରେ ବୈଠକ ଘରଟି ସଂଗୀତମୁଖର ହୋଇ ଯାଇଥିଲା। ତାଙ୍କ ହାତରେ ଧରିଥିବା ପ୍ୟାକେଟ୍ ମୋତେ ଧରାଇ ଦେଇ ସେ ତରତର ହୋଇ ଫ୍ରିଜ୍ ଖୋଲିଥିଲେ।

ସେ ସବୁବେଳେ ଏମିତି। ଆଳସ୍ୟ ତାଙ୍କର ଅସହ୍ୟ। କ୍ଲାନ୍ତ ହୋଇ ଫେରିବା ପରେ ନିଜକୁ ଏମିତି ଫୁର୍ତ୍ତି ରଖନ୍ତି ସେ।

''ଖୁବ୍ ଡେରି ହୋଇଗଲା ନା? ଶିଖା, ପ୍ଲେଟ ଦିଅ ତ।'' ସବୁ ସେ କରିବେ। ପ୍ୟାକେଟ୍ ଖୋଲି ସେ ସଜାଇ ରଖିଲେ ମଟନ୍ ଟିକା, ପୋଦିନା ଚଟଣୀ।

ଅବଶ୍ୟ ତାଙ୍କୁ ମୁଁ ସାହାଯ୍ୟ କରିବାକୁ ତିନୋଟି ଗ୍ଲାସ ନେଇ ଆସିଥିଲି।

ସୂର୍ଯ୍ୟ ଲାଇଟ୍ ଡ୍ରିଙ୍କ୍ ପସନ୍ଦ କରନ୍ତି, କେବଳ ମୋ ପାଇଁ।

ଆଉ ମୁଁ? ଏ ସବୁରେ ମୋର ପସନ୍ଦ ମୁଁ ଛାଡ଼ି ଦେଇଛି ତାଙ୍କ ଉପରେ।

ତୁମେ ସଂଦୀପ୍, ଜିନ୍ ବୋତଲ ଖୋଲି ସାରିଥିଲ ବୋଧହୁଏ। ସୂର୍ଯ୍ୟ ମୋ ହାତରୁ ଲିମ୍‌କା ନେଇ ତିନୋଟି ଗ୍ଲାସ୍ ପ୍ରସ୍ତୁତ କରିବାରେ ତୁମକୁ ସାହାଯ୍ୟ କଲେ। ଏତିକିବେଳେ ସୂର୍ଯ୍ୟଙ୍କୁ ପୁଣି କିଏ ଦେଖା କରିବାକୁ ଆସି ତଳ ଘରେ ଅପେକ୍ଷା କରିଛନ୍ତି ବୋଲି ଷ୍ଟେନୋ ଖବର ଦେଇ ଚାଲିଗଲା।

ସୂର୍ଯ୍ୟ ତରତରରେ ଉଠିଗଲେ। ଆଉ ସଂଦୀପ୍, ସେ ଠିକ୍ ଚାଲିଯିବା ପରେ ତୁମେ ହଠାତ୍ କହି ପକାଇଲ, ''ଶାଢ଼ୀଟା ଖୁବ୍ ସୁନ୍ଦର ମାନୁଛି ତୁମକୁ।'' ମୁଁ ଉତ୍ତର ନ ଦେଇ ଟିକିଏ ହସରେ ଧନ୍ୟବାଦ ଜଣାଇଲି।

ସଂଦୀପ୍, ଗ୍ଲାସରୁ ମାତ୍ର ଥରେ ବା ଦୁଇଥର ପିଇ ଆମେ କେହି ନିଶାଗ୍ରସ୍ତ ହୋଇ ନ ଥିଲେ। ଆଉ ତୁମ କଣ୍ଠରେ ବାରମ୍ବାର ସେଇ ଏକ କଥା ମୋତେ ଆଦୌ ଭଲ ଲାଗୁ ନ ଥିଲା।

ମୋ ଗ୍ଲାସ୍‌ଟା ହାତରେ ନେଇ ମୁଁ ଉଠି ଯାଇଥିଲି ପାଖ ବାଲ୍‌କୋନିକୁ, ଯେଉଁଠୁ ଚାହିଁଲେ ତଳ ଘରର ଝର୍କା ଦେଇ ମୁଁ ସୂର୍ଯ୍ୟଙ୍କୁ ଦେଖି ପାରିବି। ବର୍ତ୍ତମାନ ସୁଦ୍ଧା ସେ ଘରୁ କଥାବର୍ତ୍ତା ଶୁଣାଯାଉ ଥିବାରୁ ଆଗନ୍ତୁକ ଭଦ୍ରବ୍ୟକ୍ତି ଯେ ଏ ପର୍ଯ୍ୟନ୍ତ ଯାଇ ନାହାନ୍ତି ଭାବି ମୁଁ ବ୍ୟସ୍ତ ହୋଇ ଫେରି ଆସିବା ବେଳେ ଆବିଷ୍କାର କରିଥିଲି, ତୁମେ ମୋର ଖୁବ୍ ପାଖକୁ ଲାଗି ଠିଆ ହୋଇଛ।

ମୁଁ ଅନ୍ଧକାରରେ ବେଶି ସମୟ ଠିଆ ହେବାକୁ ଇଚ୍ଛା କରି ନ ଥିଲି। ତୁମ ହାତ ମୋ କାନ୍ଧ ସ୍ପର୍ଶ କରିଥିଲା। ଧୀରେ ତୁମେ ମୋତେ ବୈଠକ ଘରକୁ ଆସିବାକୁ ସାହାଯ୍ୟ କରିଥିଲ। ଅନେକ ରାତ୍ରିଯାଏ ରହିଗଲ ତୁମେ। ରାତ୍ରି ଭୋଜନ ଶେଷ ହେବା ପରେ ମଧ୍ୟ ଆମର ଆଳାପର ସ୍ରୋତ ଅବ୍ୟାହତ ଥିଲା।

ସୂର୍ଯ୍ୟ ହାତ ଘଡ଼ି ଦେଖିଲେ। ବାରଟା ବାଜିବା ପୂର୍ବରୁ ତୁମେ ବିଦାୟ ନେଲ, ସଂଦୀପ।

କିଛି ସମୟ ବର୍ଷା ପରେ ବେଶ୍ ଥଣ୍ଡା ଲାଗୁଥାଏ। ମେଘମୁକ୍ତ ଆକାଶ, ରାତ୍ରିର ନିସ୍ତବ୍ଧତା, ବଗିଚାରେ ମଲ୍ଲୀ, ରଜନୀଗନ୍ଧାର ମହକ, ମୋତେ ଛୁଇଁ ଯାଇଥାଏ।

କେତେ ଶୀଘ୍ର ଶୋଇଗଲେ ସୂର୍ଯ୍ୟ! ସଂଦୀପ, ହଠାତ୍ ତୁମେ ମୋ ମନକୁ ସ୍ପର୍ଶ କଲ। ମନେ ପଡ଼ିଲା ସନ୍ଧ୍ୟାର ଆସର। ତୁମର ସେଇ ଅଳ୍ପ କେତୋଟି କଥା।

ମୋ ଆଖିରେ ଆଖିଏ ନିଦ। ରାତ୍ରି ବଢୁଛି। ବାହାର ପାଖ କବାଟ ବନ୍ଦ କରି ମୁଁ ବିଛଣାକୁ ଗଲି।

ମାତ୍ର କେତୋଟି ଦିନ ପରେ-

ତୁମେ ହଠାତ୍ ଏମିତି ଆସିଯିବ ବୋଲି ଆମେ କେହି ଭାବି ନ ଥିଲୁ। ସୂର୍ଯ୍ୟ ଘରକୁ ଫେରି ଆସିଥିଲେ ମଧ୍ୟ ତାଙ୍କର କାର୍ଯ୍ୟ ବ୍ୟସ୍ତତା ତଥାପି ଶେଷ ହୋଇ ନ ଥିଲା। ଅଳ୍ପ ସମୟ ପରେ ଫେରି ଆସିବାର ପ୍ରତିଶ୍ରୁତି ଦେଇ ସେ ବାହାରି ଯାଇଥିଲେ। ସେଦିନ କ'ଣ ପର୍ବ ଥାଏ ବୋଲି ରୋଷେଇ କରିବା ଲୋକଟି ମଧ୍ୟ ଛୁଟି ନେଇ ଚାଲି ଯାଇଥାଏ।

ରୋଷେଇ ଘରେ ମୋର କାମ ଲାଗିଥାଏ। ଏମିତି ସମୟରେ ତୁମେ

ହଠାତ୍ ପହଞ୍ଚିଗଲ।

ସଂଦୀପ, ଆମ ପ୍ରତ୍ୟେକଙ୍କର ମନରେ ପ୍ରତି ମୁହୂର୍ତ୍ତରେ କି ଚିନ୍ତା କାର୍ଯ୍ୟ କରୁଥାଏ, ତା ହୁଏତ ଅନ୍ୟ ଜଣେ ଜାଣିପାରେ ନାହିଁ।

ତୁମକୁ ବୈଠକ ଘରେ ବସାଇ ତରତରରେ ରୋଷେଇ ଘରକୁ ଚାଲି ଆସୁଥିବା ବେଳେ ତୁମେ ହଠାତ୍ କହି ପକାଇଲ, ''ଶିଖା, ତୁମକୁ ମୋର କେତେ କଥା କହିବାର ଅଛି।''

''ଗୋଟାଏ ମିନିଟ୍‌ରେ ଆସୁଛି।''

ଅଳ୍ପ ସମୟ ପରେ ମୁଁ ଚାଲି ଆସିଲି। ସଂଦୀପ, ପଢୁଥିବା ପତ୍ରିକାରୁ ମୁହଁ ଉଠାଇ ତୁମେ ମୋତେ ଚାହିଁ ପଚାରିଥିଲ,

-କ'ଣ ଏତେ କାମ ଚାଲିଛି ?

-ଆଜି ଏଠି ଖାଇ କରି ଯିବ।

-ଓଃ ସବୁବେଳେ ଖାଲି ଖାଉଥିବି।

-ସରିତାକୁ ଫୋନ୍‌ରେ କହିଦେବି ?

-ନା...ନା ଥାଉ। ସେ ଜାଣନ୍ତି ମୁଁ ଡ଼େରିରେ ଫେରିବି।

-ବୋର୍ ହେଉଛ, ସୂର୍ଯ୍ୟ ଆସିଯିବେ।

ତୁମେ ଉତ୍ତର ନ ଦେଇ ହସିଲ। ମୁଁ ଉଠିଗଲି ରେକର୍ଡଟା ବଦଳାଇ ଦେବା ପାଇଁ। ପାଖ ବୁକ୍ ସେଲ୍‌ଫରେ ମୋର ସଦ୍ୟ ପ୍ରକାଶିତ ଗଳ୍ପ ସଂକଳନଟି ତୁମ ନାଆଁ ଲେଖି ସେଇଠି ରଖି ଦେଇଥିଲି କେତେଦିନରୁ।

ମାତ୍ର ପ୍ରତିଥର ଭୁଲି ଯାଉଥିଲି ଦେବାପାଇଁ।

ଏ କ'ଣ! ଗୋଟିଏ ମୁହୂର୍ତ୍ତରେ କ'ଣ ଏମିତି ହୋଇଗଲା ? ମୋ ହାତ ଥରି ବହି ଖଣ୍ଡକ ତଳେ ପଡ଼ି ଯାଇଥିଲା।

ବସିଥିବା ସୋଫାରୁ ଏତେ ଶୀଘ୍ର ଉଠି ଆସି ମୋ ପଛରେ ଠିଆ ହୋଇ ରହିଥିଲ, ସଂଦୀପ! ନଇଁପଡ଼ି ବୁକ୍ ସେଲ୍‌ଫରୁ ବହିଟି ଉଠାଇ ଆଣିବା ପରେ ତୁମର ଦୃଢ଼ ବାହୁ ମୋତେ ଆବୃତ କରିଥିଲା। ମୁଁ କିଛି କହିବା ପୂର୍ବରୁ ତୁମେ ମୋ ପିଠିର ଖୋଲା ଅଂଶରେ ଓଠ ଲଗାଇଲ।

ମୁଁ ତୁମକୁ ଠେଲି ବସାଇ ଦେଲି। ସଂଦୀପ, ପୂର୍ବରୁ ମୁଁ ତୁମକୁ କେବେ ବି ଏମିତି ଭାବି ନ ଥିଲି। ମୁଁ କହିବାକୁ ଚାହୁଁଥିବା କଥାମାନେ ମୋତେ

ଅସ୍ଥିର କରୁଥିଲେ ।

ତୁମେ ମୋତେ ଧୀର ସ୍ୱରରେ କ'ଣ କହୁଥିଲ, ମୁଁ ହୁଏତ ଶୁଣିପାରୁ ନ ଥିଲି ।

ଠିକ୍ ଏତିକିବେଳେ ବୈଠକ ଘରର ପର୍ଦ୍ଦା ଆଡ଼େଇ ଫଗୁଣର ମୃଦୁ ମଳୟ ଭଳି ପଶି ଆସିଲେ ସୂର୍ଯ୍ୟ । ସେ ଖୁବ୍ ଉତ୍‌ଫୁଲ୍ଲ ଚିତ୍ତରେ ବାହାରୁ ଆସିଥିଲେ ।

''ବୁଝିଲ ସଂଦୀପ୍, ନିକଟରେ ମୁଁ ଗୋଟାଏ ନୂଆ ପ୍ରୋଜେକ୍ଟ ଆରମ୍ଭ କରୁଛି । ଆଜି ସବୁ ଫାଇନାଲ ହୋଇଗଲା ।''

''କଂଗ୍ରାଚୁଲେସନ୍‌ସ ।'' ଅତି ଖୁସିରେ ସୂର୍ଯ୍ୟଙ୍କୁ ତୁମେ କୁଣ୍ଢାଇ ଧରିଲ । ''ଲେଟ୍ ଅସ୍ ସେଲିବ୍ରେଟ୍ ଦିସ୍ ଇଭିନିଂ ।''

ଦୁଇଟି ପ୍ରଗଲ୍‌ଭ ଯୁବକଙ୍କ ଭଳି ତୁମ ଦୁହିଁଙ୍କୁ ଏଭଳି ଆନନ୍ଦ ବିହ୍ୱଳ ହେବାର ଦେଖି ମୁଁ ବି ସହଜ ହୋଇଥିଲି । ରୋଷେଇ ଘରେ ବାକୀ କାମ ଶେଷ କରିବା ଉଦ୍ଦେଶ୍ୟରେ ମୁଁ ଉଠି ଯାଇଥିଲି ।

ସୂର୍ଯ୍ୟ ଟି ପୟ ଉପରେ ତିନୋଟି ଗ୍ଲାସ୍ ସଜେଇ ରଖି କିଛି ଆଇସ୍ ଆଣିବାକୁ ମୋତେ ନିର୍ଦ୍ଦେଶ ଦେଲେ ।

ସେତେବେଳେ ସେ ଖୁବ୍ ଗପୁଥିଲେ । କେଉଁ କଥା ପ୍ରସଙ୍ଗରେ ସୁଦୂର କନ୍ୟାକୁମାରୀର ସୌନ୍ଦର୍ଯ୍ୟ ବିଷୟରେ କହିବା ବେଳେ ଅତ୍ୟଧିକ ଭାବାବେଗରେ ତାଙ୍କର ମୁଖ ଉଜ୍ଜଳ ହୋଇ ଉଠିଥିଲା ।

ତିନୋଟି ସାଗରର ସଙ୍ଗମସ୍ଥଳୀ, ଏଇ ଅଲୌକିକ ସୌନ୍ଦର୍ଯ୍ୟ ବିନା ଦର୍ଶନରେ କେହି ଅନୁଭବ କରି ପାରିବେ ନି । ସେଇ ସମୁଦ୍ର ଧାରରେ ଦଣ୍ଡାୟମାନ ହୋଇ ଭାରତର ଶେଷ ସୀମାରେ ପହଞ୍ଚି ଯାଇଥିବାର ଆନନ୍ଦ ଅବର୍ଣ୍ଣନୀୟ । ଆଉ ସେଇ ବେଳାଭୂମିରୁ ସନ୍ନିହିତ ସମୁଦ୍ରର ଅସୀମ ପରିବ୍ୟାପ୍ତି ପ୍ରତି ଦୃଷ୍ଟି ନିକ୍ଷେପ କଲେ ମଣିଷ ମନର କାମ, କ୍ରୋଧ, ଲୋଭ, ଅହଂଭାବ ଅଚିରେ ଅପସାରିତ ହୁଏ । ଏ ଅଳୀକ ସଂସାର ପ୍ରତି ସେ ହୁଏ ବୀତସ୍ପୃହ ।

ସୂର୍ଯ୍ୟ ଆଉ ଅଧିକ କହି ପାରିଲେ ନାହିଁ ।

ତାଙ୍କର ଟେଲିଫୋନ୍ । ଟି-ପୟ ଉପରେ କିଛି କଟା ଲେମ୍ବୁ ଆଉ ପାଣି ବୋତଲଟି ରଖିଦେଇ ମୁଁ ତାଙ୍କୁ ଟେଲିଫୋନ୍ ଧରିବାକୁ କହିଲି ।

ତୁମେ କହିଲ, ''ବସ ଶିଖା !''

ମୁଁ ବସିଲି। ତୁମେ ମୋତେ କିଛି ସମୟ ଚାହିଁରହି କହିଲ, ''ସୂର୍ଯ୍ୟ କ'ଣ କହିଲେ ଶୁଣିଲ ତ ? ଚୁପ୍ ଚାପ୍ ବସି ସମୁଦ୍ରକୁ ଚାହିଁ ଆମେ ସଂସାରତ୍ୟାଗୀ ସନ୍ନ୍ୟାସୀ ହୋଇଯିବା।''

-ସେ ସମୟ ତ ପ୍ରାୟ ଆସି ଯାଇଛି।

-ଶିଖା, ତୁମେ କିଛି ବୁଝନା।

-କିଛି ଭୁଲ୍ କହିଲି ?

-ତୁମେ ମୋତେ ଖୁବ୍ କଷ୍ଟ ଦେଉଛ, ଶିଖା !

ମୁଁ! ସଂଦୀପ, କ'ଣ ଯେ ତୁମେ କୁହ ?

କଥାଟା ସହଜ କରିନେବାର ପ୍ରୟାସ କରି ମୁଁ କହିଲି, ''ତୁମକୁ ସମୁଦ୍ର ଦେଖିବାକୁ ଭଲ ଲାଗେ ନା ? ଓଃ, ସମୁଦ୍ରର ସେଇ ପ୍ରଶାନ୍ତ ସୌନ୍ଦର୍ଯ୍ୟକୁ ମନଭରି ଉପଭୋଗ କରିବାରେ କି ଆନନ୍ଦ କୁହ ତ ?''

''ଖାଲି ଦେଖିବାରେ? ସମୁଦ୍ରରେ ଗାଧୋଇବାରେ କିନ୍ତୁ ଅଧିକ, ଆନନ୍ଦ, ଶିଖା !''

''କିନ୍ତୁ ସମୁଦ୍ରରେ ଗାଧୋଇବାରେ ଭାସିଯିବାର, ବୁଡ଼ିଯିବାର ଭୟ ତ ଥାଏ।''ମୁଁ ହସି ହସି ଉତ୍ତର ଦେଲି।

''ଧେତ୍ ପିଲାମାନେ ଡରନ୍ତି।''

ଏଇ କଥାରେ ଆମେ ଦୁହେଁ ହସି ପକାଇଲେ।

ତୁମେ କିଛି ସମୟ ନୀରବ ରହି ପୁଣି କହିଲ, ''ମୋ ସାମ୍ନାରେ କିନ୍ତୁ ସ୍ଲାସ ଥୋଇ ତମେ ଶିଖା କହୁଛ, ହେ ଥାଉ , ସେ ସବୁ ଛୁଇଁବାକୁ ମନା।''

''ସୁନ୍ଦର !''

''କିଏ ସୁନ୍ଦର, ଶିଖା ?

''ତୁମର ଉପମା, ତୁମର କଥା କହିବାର ଭଙ୍ଗୀ। କବିତା ଲେଖୁନ !''

''ସେ ଶକ୍ତି ଥିଲେ ମୁଁ ହୁଏତ ଏତକି କଷ୍ଟ ପାଆନ୍ତି ନାହିଁ। ଖାଲି ତୁମରି ପାଇଁ ଶିଖା, ତୁମରି ପାଇଁ ଜଳୁଛି ମୁଁ।'' ଅତି ଆବେଗରେ ମୋ ହାତଟିକୁ ଚାପି ଧରିଥିଲ ତୁମେ।

ସଂଦୀପ, ନିଜକୁ ହଜାଇ ଦେବାକୁ ମୁଁ କେବେ ବି ଚାହୁଁ ନି ଥିଲି। ତୁମେ, ମୁଁ, ସୂର୍ଯ୍ୟ ଏମିତି ସନ୍ଧ୍ୟାରେ ବନ୍ଧୁତ୍ୱର ଏଇ ଅନ୍ତରଙ୍ଗ ପରିବେଶ, ଯାଠାରୁ ଅଧିକ ଆଶା କରିବା ଅର୍ଥ ନିଶ୍ଚିତ ଭାବରେ କଷ୍ଟ ପାଇବା, ଯା ତୁମେ ବୁଝୁନ କାହିଁକି? ଆମେ ସବୁ ବୁଝୁ, ଜାଣୁ। ଯାହା ଶାଶ୍ୱତ, ସୁନ୍ଦର, ସେଇ ପଥରେ ନିଜ ମନକୁ ପରିଚାଳିତ କରିପାରୁ। ସେଇଥି ପାଇଁ ତ ଆମେ ମଣିଷ।

ମୁଁ ଠିକ୍ ଏମିତି କ'ଣ କହିବାକୁ ଯିବାବେଳେ ସୂର୍ଯ୍ୟ ଆସି ଯାଇଥିଲେ। ଆମେ ଗ୍ଲାସ ତିନୋଟି ଏକାଠି ଉଠେଇ ନେଲେ।

ତୁମେ ସଂଦୀପ, ଦକ୍ଷ ଅଭିନେତାଙ୍କ ଭଳି ସୂର୍ଯ୍ୟଙ୍କ ସହ ବ୍ୟବସାୟିକ ଆଲୋଚନାରେ ମଜ୍ଜି ଯାଇଥିଲ।

ମୁଁ କିନ୍ତୁ ନୀରବ ରହି ନିଜ ଚିନ୍ତାରେ ମଗ୍ନ ଥିଲି, ସଂଦୀପ। ଆଉ ତୁମେ ଯେତେବେଳେ ପଚାରିଲ, "କଣ ଏକଦମ୍ ଚୁପଚାପ?" ସୂର୍ଯ୍ୟ—ହସି ହସି ଉତ୍ତର ଦେଲେ, "ସେ ତାଙ୍କର ପ୍ରିୟ ସଂଗୀତ ମଧ୍ୟରେ ହଜି ଯାଇଛନ୍ତି।"

ମୁଁ ସୂର୍ଯ୍ୟଙ୍କୁ ଚାହିଁ ଟିକିଏ ହସିଲି। ତୁମେ ଯଦି ସଂଦୀପ ସେତେବେଳେ ଉପସ୍ଥିତ ନ ଥାନ୍ତ, ମୁଁ ତାଙ୍କୁ ନିଶ୍ଚୟ ଚୁମ୍ବନ କରିଥାଆନ୍ତି।

ତୁମେ ମୋତେ ଚିଲିସସ୍ ବୋତଲଟା ବଢ଼ାଇ ଦେବାରେ ସାହାଯ୍ୟ କଲ। ସୂର୍ଯ୍ୟ ସହ ବିଭିନ୍ନ କଥାବାର୍ତ୍ତା ମଧ୍ୟରେ ତୁମେ ମୋ ଗ୍ଲାସଟା ହାତରୁ ନେଇ ଅଳ୍ପ କିଛି ଜିନ୍ ବୋତଲରୁ ଢ଼ାଳିଦେବା ପରେ ପାଣି ବୋତଲଟା ପାଇଁ ମୁଁ ପ୍ରାୟ ତୁମ ପାଖକୁ ଲାଗି ଆସିଥିଲି।

ଆଉ ମନେ ମନେ ତୁମକୁ କହିଲି, ସଂଦୀପ, ତୁମେ ମୋତେ ଯାହା ଭାବୁଛ, ମୁଁ ତା' ନୁହେଁ। ଟିକିଏ ଖୁସି ହେବା, ବନ୍ଧୁତ୍ୱର ପରିବେଶ ମଧ୍ୟରେ ତୁମମାନଙ୍କ ସହ ଏଭଳି କିଛି ସମୟ କଟାଇବା ଅର୍ଥ ଯେ ମୁଁ ତୁମଠୁଁ ଆହୁରି ଅନେକ କିଛି ଚାହେଁ କିମ୍ୱା ତୁମର କାମନାକୁ ସ୍ୱାଗତ ଜଣାଇବାକୁ ପ୍ରସ୍ତୁତ, ଏଭଳି ଭୁଲ ଧାରଣା ତୁମ ମନକୁ କାହିଁକି ଆସେ?"

ସଂଦୀପ, ଗୋଟିଏ ସୁନ୍ଦର ବନ୍ଧୁତ୍ୱକୁ ତୁମେ ଏଭଳି କୁତ୍ସିତ ରୂପ ଦେଉଛ କାହିଁକି?

ମୋ ମନର ଏ ସମସ୍ତ କଥା ତୁମକୁ କହିବାର ସୁଯୋଗ ଆଉ ମୁଁ

ପାଇଲି କେବେ !

ଯା'ପରେ କେତେ ଦିନ ବିତି ଯାଇଛି ! ସୂର୍ଯ୍ୟ ଦୀର୍ଘ ଦିନ ଧରି ତାଙ୍କ ନୂଆ ପ୍ରୋଜେକ୍ଟ ନେଇ ବ୍ୟସ୍ତ ରହିଛନ୍ତି । ତୁମେ ଟେଲିଫୋନ୍ କରି ବ୍ୟସ୍ତ ହୋଇଛ ଆସିବାର ସମୟ ପାଇନ ବୋଲି ।

ଅଥଚ ସେଦିନ ମଧ୍ୟାହ୍ନରେ ନିହାତି ଅପ୍ରତ୍ୟାଶିତ ଭାବେ ଝଡ଼ ଭଳି ତୁମେ ପହଞ୍ଚିଯାଇଥିଲ ।

ସୂର୍ଯ୍ୟ କିଛିଦିନ ପାଇଁ ଦିଲ୍ଲୀ ଯାଇଥିବା ଖବର ତୁମେ ବୋଧହୁଏ ଜାଣିଥିଲ କିମ୍ବା ହୋଇପାରେ ତୁମ ଆସିବା, ସେ ନ ରହିବା ଏକ ଯୋଗାଯୋଗ ତୁମ ପାଇଁ ।

"ଖୁବ୍ ରାଗିଛ ଶିଖା, ଭାବୁଥିବ ମୁଁ ଗୋଟାଏ ଠକ ।"

ମୁଁ ହସିଲି, "ଯେ ବି ଏଭଳି ବ୍ୟସ୍ତ ରହୁଛନ୍ତି, କୁଆଡ଼େ ଯାଇ ହେଉନି ।"

"ମୁଁ କିନ୍ତୁ ବାରମ୍ବାର ଆସିବାକୁ କହି କଥା ରଖିନି ।"

ମୁଁ ତୁମକୁ ପଚାରିଲି, "ଘରକୁ ଖାଇବାକୁ ଯାଇଛ କି ନାହିଁ?" ତୁମେ ହସି ହସି ଉତ୍ତର ଦେଲ, "ଏବେ ତ ଆସିଲି, ଏ ଯାଏ ଯାଇନି । କ'ଣ ଖାଇବାକୁ ରଖିଛ ?"

ମୋର ଖାଇବା ଶେଷ ହୋଇଥିଲା । ଶୀଘ୍ର କିଛି ଖାଦ୍ୟ ପାଇଁ ତଳ ଘରୁ ପୂଜାରୀକୁ ଉଠାଇବାକୁ ଯିବାବେଳେ ତୁମେ ମୋତେ ବାଧା ଦେଇ ମନା କଲ ।

"ଶିଖା, ସବୁବେଳେ କଣ ମୁଁ ଖାଇବାକୁ ଆସୁଥିବି ।"

"କିନ୍ତୁ ଉପାସରେ ଆସି ନ ଖାଇ ଚାଲିଯିବ କାହିଁକି ?"

"ଦିନେ ବି ବୁଝିଲ ନି କ'ଣ ଚାହେଁ!" ସଂଦୀପ, ତୁମ କଣ୍ଠ ଥରି ଉଠିଲା । ତୁମେ ଯାହା ଚାହୁଁଥିଲ ଠିକ୍ କହି ପାରିଲନି ।

ମୁଁ ବିରକ୍ତିରେ ସେ କୋଠରୀରୁ ଚାଲିଯିବାର ଉପକ୍ରମ କରିବା ସମୟରେ ତୁମେ ମୋ ହାତଟା ଏଭଳି ଜୋର୍‌ରେ ଟାଣି ଦେଲ ଯେ ମୁଁ ପ୍ରାୟ ସୋଫାରେ ଅଧାଶୁଆ ଅବସ୍ଥାରେ ପଡ଼ି ଯାଇଥିଲି ।

ତୁମକୁ ଏତେ ନିକଟରେ ଦେଖି ହଠାତ୍ ମୁଁ କହି ପକାଇଲି, "ତୁମେ ଚାଲିଯାଅ, ସଂଦୀପ ! ଆଉ କେବେ ବି ଆସିବ ନି । ନା, ଆଉ କେବେ

ବି ନୁହଁ।"

ଇଚ୍ଛା ନ କରି ମଧ୍ୟ ଗଭୀର ଉତ୍ତେଜନାରେ ମୁଁ ତୁମକୁ କ'ଣ ସବୁ କହି ପକାଇଲି।

ତଥାପି ତୁମେ ଆସ୍ତେ ହସି କହିଲ, "ମୁଁ ଯାଉଛି, ଶିଖା। ମୁଁ କେବେ ବି ତୁମକୁ ବଳାତ୍କାର କରିବିନି। କେବେ ଯଦି ଖୋଜିବ ମୁଁ ନିଶ୍ଚୟ ଆସିବି।"

ସଂଦୀପ, ଏମିତି କାହିଁକି ହେଲା? ମୁଁ ଯାହା ବୁଝେ, ତୁମେ ଦିନେ ବି କାହିଁକି ବୁଝିଲ ନି। ତୁମ ପାଖରେ ଦେବତ୍ୱର ସନ୍ଧାନ କରିଥିଲି ମୁଁ। ଅଥଚ ତୁମେ ଏତେ ତଳକୁ ଓହ୍ଲାଇଗଲ କାହିଁକି?

ଦିନେ ନିଶ୍ଚୟ ତୁମ ସଙ୍ଗେ ଦେଖା ହେବ, ସଂଦୀପ। ମୋର ବିଶ୍ୱାସ ସେଦିନ ସେଇ ମଣିଷଟିକୁ ମୁଁ ନିଶ୍ଚୟ ଖୋଜି ପାଇବି। ☐ ☐ ☐

'ବିଷୁବ' ଝଂକାର, ୧୯୮୨

# ସକାଳର ଶୋକ

ପ୍ରଭାତର ସୂର୍ଯ୍ୟ ସେ ପର୍ଯ୍ୟନ୍ତ ପୂର୍ବ ଦିଗ ଛୁଇଁ ନ ଥିଲା । ସକାଳର ସ୍ନିଗ୍ଧ, କୋମଳ ରୂପଶ୍ରୀ ଦେଖା ଯାଉଥିଲା କାନ୍ତ, କମନୀୟ । ଠିକ୍ ସେତିକିବେଳେ ପ୍ରାତଃଭ୍ରମଣ ଶେଷ କରି ଘରକୁ ଫେରି ଆସୁଥିଲେ ପ୍ରତାପରୁଦ୍ର । ମୁହଁରେ ଗାମ୍ଭୀର୍ଯ୍ୟର ରେଖା କେତୋଟି ସୂଚେଇ ଦେଉଥିଲା ସେ ଅସନ୍ତୁଷ୍ଟ ।

ଗାଧୋଇବା ଘରୁ ଓଦା ଲୁଗାରେ ବାହାରି ଆସି ଚଉରାରେ ପାଣି ଦେଉଥିଲେ ସତ୍ୟବତୀ । ମୁହଁ ଦେଖା ଯାଉଥିଲା ଶିଶୁ ସକାଳ ଭଳି ସତେଜ । ଆଖିରେ ପଡ଼ିଲା ପୁତ୍ର ପ୍ରତାପରୁଦ୍ରର ବିଷଣ୍ଣ ମୁଖ । ଶୁଭ୍ର ସକାଳର ପ୍ରସନ୍ନତା ତଥାପି ତାଙ୍କୁ ଆଚ୍ଛନ୍ନ କରି ରଖିଥାଏ । ଘରେ ଏତେ ସକାଳୁ କିଛି ବିସ୍ମୟକର ଘଟଣା ଯେ ଘଟି ଯାଇଛି, ଏପରି ଚିନ୍ତା ତାଙ୍କ ମନକୁ ସ୍ପର୍ଶ କରି ନ ଥିଲା ।

ଏ ପର୍ଯ୍ୟନ୍ତ ସେମାନେ କେହି ଉଠି ନାହାନ୍ତି । ସେମାନଙ୍କର ସକାଳ ହୁଏ ବହୁ ଡ଼େରିରେ । ସେତେବେଳେ ସୂର୍ଯ୍ୟକିରଣ ଅଗଣା ଏବଂ ସାମ୍ନା ଫୁଲ ବଗିଚାରେ ବିଛେଇ ହୋଇ ଯାଇଥାଏ । ସତ୍ୟବତୀ ନାତି, ନାତୁଣୀମାନଙ୍କୁ କହନ୍ତି, ''ଖୁବ୍ ସକାଳୁ ଉଠିପଡ଼, ଏଇ ମୁଁ ଯେତେବେଳେ ବଗିଚାରୁ ଫୁଲ ତୋଳୁଛି । ଧୀର ସମୀରଣ ଦେହ, ମନକୁ ସାରାଦିନ ସତେଜ ରଖିବ । ନିଜର ପ୍ରାତଃକର୍ମ ଶେଷ କରିବା ପାଇଁ ହାତରେ ଥିବ ପ୍ରଚୁର ସମୟ । ବିଳମ୍ବରେ ଉଠି ଅକାରଣେ ବିରକ୍ତ, ଉତ୍ତେଜିତ ହେବା ସ୍ୱାସ୍ଥ୍ୟ ପାଇଁ ଭଲ ନୁହେଁ ।''

ଉପଦେଶ କାହାକୁ ଭଲ ଲାଗେ ନାହିଁ । କେହି ତାଙ୍କ କଥା ଗ୍ରହଣ

କରନ୍ତି ନାହିଁ। ସେ କିନ୍ତୁ ନିଜ କଥାରେ ସମ୍ମୋହିତା ହୁଅନ୍ତି। ନିଜେ ନିଜ କଥା ମାନିବା ଭଳି ଅନ୍ଧାର ଥାଉ ଥାଉ ଉଠି ପଡ଼ନ୍ତି, ସୂର୍ଯ୍ୟ ନ ଉଠୁଣୁ ଫୁଲ ତୋଳା, ଗାଧୁଆ ସରିଯାଏ। ନିରୋଳାରେ ଠାକୁରଙ୍କୁ ମନ ଭରି ଡ଼ାକିବାକୁ ସମୟ ମିଳେ। ପୂଜା ସାରି ଗୀତା, ଭାଗବତ ପଢ଼ି ଅଶ୍ରୁଳ ଆନନ୍ଦରେ ବିହ୍ୱଳ ହେବାରେ କଟିଯାଏ କେତେ ସମୟ। ତା'ପରେ ଆଖି ବୁଜି ନୀରବ ପ୍ରାର୍ଥନାରେ ବସି ରହନ୍ତି ସେ। ପରେ ପରେ ଆରମ୍ଭ ହୋଇଯାଏ ଦୈନନ୍ଦିନ କୋଳାହଳ, ବିରକ୍ତି, ଅସନ୍ତୋଷ ଓ ଉତ୍ତେଜନା।

ସେମାନେ ଡ଼େରିରେ ଉଠିଛନ୍ତି। ନିତ୍ୟକର୍ମ ଶେଷ କରି ପଢ଼ା ଆରମ୍ଭ କରିବାକୁ ସମୟ ନାହିଁ। ସକାଳ ଜଳଖିଆ ଖାଇ ପୁଣି ନଅଟା ବେଳେ ସ୍କୁଲ କଲେଜ ଯିବା ପୂର୍ବରୁ ଭାତ ଖାଇ ବସିଲେ, ଭୋକ ନ ଥିବାରୁ ଖାଇ ହେଉ ନାହିଁ। ଅଥଚ ଖାଇବାକୁ ପଡ଼ିବ, କାହିଁକି ନା ସେମାନେ ଫେରିବେ ସନ୍ଧ୍ୟା ପାଞ୍ଚଟାରେ।

ସତ୍ୟବତୀ ଚଉରାରେ ପାଣି ଦେଉଛନ୍ତି। ଭାବୁଛନ୍ତି ନାତି, ନାତୁଣୀଙ୍କ କଥା। ଦ୍ୱିତଳ ପାହାଚରୁ ହାତରେ ଚା' କପ୍ ଧରି ଓହ୍ଲେଇ ଆସୁଥିଲେ ପ୍ରତାପରୁଦ୍ର। ତାଙ୍କ ପଛେ ପଛେ ହାତରେ ଆଟାଚି ଖଣ୍ଡେ ଧରି ଆସୁଛି ସାନ ପୁଅ ଚନ୍ଦ୍ରଶେଖର। ସକାଳ ବସ୍‌ରେ ସେ ଫେରିଯାଉଛି ବାରିପଦା, ତା'ର କାର୍ଯ୍ୟସ୍ଥଳୀ। ସେ ଇଞ୍ଜିନିୟର। ନିକଟରେ ଭୁବନେଶ୍ୱରରୁ ତା'ର ବଦଳି ହୋଇଛି ବାରିପଦାକୁ। ଦୁଇଦିନ ତଳେ ଅଫିସ୍ ସଂକ୍ରାନ୍ତୀୟ ଏକ ମିଟିଂରେ ଯୋଗ ଦେବାକୁ ଆସି ସେ ଫେରି ଯାଉଛି। ଚନ୍ଦ୍ର ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା କରୁଛି। ପ୍ରତାପ କଥା ଶୁଣିବାବେଳେ ଗମ୍ଭୀର ରହିଛନ୍ତି। ହଠାତ୍ ଆକସ୍ମିକ ଝଡ଼ଟାଏ ମାଡ଼ି ଆସିଲା। ପ୍ରତାପରୁଦ୍ର ଚିତ୍କାର କରି ଉଠିଲେ, "ମୁଁ କହୁଛି, ତୁ ତାକୁ ନେଇଯା।"

ଚନ୍ଦ୍ର କ'ଣ ଉତ୍ତର ଦେଉଛି ଶୁଣା ଯାଉନି। ଚନ୍ଦ୍ର ଶାନ୍ତ, ବିଚାରବନ୍ତ। ପ୍ରତାପ କ୍ଷଣକୋପୀ, ଖୁବ୍ ରାଗିଯାଏ। ଅଥଚ ଭାରି ଦୃଢ଼ମନା। ଯାହା କରିବାକୁ ସ୍ଥିର କରେ ଦୃଢ଼ ଭାବରେ କରିଯାଏ। ନଚେତ୍ କମ୍ପାନୀର ପନ୍ଦର ଶହ ଟଙ୍କାର ଚାକିରୀକୁ ଅଳ୍ପ ଦିନରେ ଛାଡ଼ି ନିଜେ ଇଣ୍ଡଷ୍ଟ୍ରୀ ଆରମ୍ଭ କରି ନ ଥାଆନ୍ତା। ବ୍ୟବସାୟର ସଫଳତାରେ ସେ ବିଜୟୀ ହୋଇଛି।

କାଲି ସନ୍ଧ୍ୟାରେ ଦୁଇ ଭାଇ ବସି ବେଶ୍ କଥାବାର୍ତ୍ତା କରୁଥିଲେ। ଅଥଚ

ଯିବା ଆସିବାବେଳେ ଏ ସବୁ ରାଗ, ବିରକ୍ତି ଭଲ କଥା ନୁହେଁ। ସତ୍ୟବତୀଙ୍କର ମନ ହେଲା ଉଠିଯାଇ ପଚାରିବେ, ''କାହିଁକି ରାଗୁଛୁ, ପ୍ରତାପ ? ସେ ପରା ବସ୍ ଧରିବାକୁ ଯାଉଛି। କେତେ ଦୂର ବାଟ ଯିବ।''

ସତ୍ୟବତୀ ବିଷ୍ଣୁଙ୍କ ଉପରେ ଫୁଲ, ତୁଳସୀ ଚଢ଼ାଇ ଦେଇ ଚନ୍ଦ୍ର ପାଇଁ ଶୁଭ ମନାସି କ'ଣ ଗୁଣୁ ଗୁଣୁ କରି ଠାକୁରଙ୍କୁ କହିଲେ। ଏଥର ଠାକୁର ଘରର ଖୋଲା ଝର୍କା ବାଟେ ପ୍ରତାପରୁଦ୍ରଙ୍କ ଉତ୍ୟକ୍ତ କଥା ସବୁ ପୁଣି ଥରେ ଆସି ସତ୍ୟବତୀଙ୍କୁ ଛୁଇଁ ଦେଇ ଚାଲିଗଲା।

ସେ କହିଲେ, ''ତୁ ଆଜି ନେଇଯା ତା'କୁ। କେତେଥର ତତେ କହିଛି। ଅଥଚ ବେଶ୍ ଫାଙ୍କିମାରି ଚାଲିଛୁ।''

''ନା ସାନଭାଇ, ତା' ମୋ ପାଇଁ ଆଦୌ ସମ୍ଭବ ନୁହେଁ।''

''ତା ହେଲେ ତୁ କହୁଛୁ, ଏକା ମୋ' ପାଇଁ ସବୁ ସମ୍ଭବ? ମୁଁ କ'ଣ ନୀଳକଣ୍ଠ ? ସବୁ ବିଷ ହଜମ କରିବି। ଅଥଚ ତୁମେ ଦୁହେଁ ବ୍ରହ୍ମା, ବିଷ୍ଣୁ ସାଜି ବସିଥିବ।''

ବଡ଼ ଭାଇ ଅମରେନ୍ଦ୍ରକୁ ଦୋଷାରୋପ କରୁଛନ୍ତି ପ୍ରତାପରୁଦ୍ର। ସତ୍ୟବତୀଙ୍କ ହାତରୁ ଫୁଲ ଖସି ପଡୁଛି। ଆଖି ହେଉଛି ଲୁହ ଛଳଛଳ। ଆହା ଅମରଟି, ଦୁଇ ତିନି ବର୍ଷ ହେଲା ଦେଖିନି ତାକୁ। ଚଡ଼ି ଖଣ୍ଡେ ପିନ୍ଧି ଖୋଲା ଦେହରେ ଠୁକୁଠୁକୁ ହୋଇ ଚାଲୁଛି ସେଇ ପିଲାଟି। ଗୋଲ୍‌ଗାଲ୍, ଗୋରା ତକ୍‌ତକ୍ ଚେହେରା। ମୁଣ୍ଡରେ କୁଞ୍ଚକୁଞ୍ଚିଆ କଳା ମଚମଚ ବାଳ। ଖଣ୍ଡା ଧାର ପରି ନାକ। କେଡ଼େ ସୁନ୍ଦର ଉଜ୍ଜଳ ଆଖି ଦୁଇଟି। ଅଭିଜିତ୍ କହନ୍ତି, ''ସତୀ, ଅମରଟା ସତରେ ଖାଲି ତୁମ ପୁଅ। ଯଦି ମୋର ଆଖି ଭଳି ଆଖି ଦୁଇଟା ଆଣି ନ ଥାଆନ୍ତା, ତେବେ ମୋ' ପୁଅ ବୋଲି କହିବାର ଅଧିକାର ଟିକକ ବି ମୋର ନ ଥାଆନ୍ତା।''

''ହଁ, ହଁ, ସେ ମୋର ପୁଅ। ଦେଖୁନ, ସବୁବେଳେ ସେ ଖାଲି ବୋଉକୁ ଖୋଜୁଛି। ବାପାକୁ ତ ଟିକିଏ ବି ପଚାରୁନି।''

''ରୁହ ଦେଖିବ ସେ କାହା ପୁଅ। ସେ ପରା ବିଶ୍ୱର ପୁଅ। ଏଇ ଉଜ୍ଜଳ ଆଖି ଦୁଇଟା ଦେଖି ମୁଁ ଜାଣି ପାରୁଛି ଭବିଷ୍ୟତରେ ସେ ବଡ଼ ମଣିଷ ହେବ।''

ଅଭିଜିତ୍ ଭବିଷ୍ୟତଦ୍ରଷ୍ଟା ଭଳି କହୁଥିଲେ।

ବଡ଼ ପୁଅ ଅମରକୁ ନେଇ ସେ ଦୁହିଁଙ୍କର କେତେ କଳ୍ପନା ! କାହିଁ ପୁଅ କ'ଣ ପାଖରେ ରହିଲା ? ପିଲାଟି ଦିନରୁ ବାହାରେ ବାହାରେ ପାଠପଢ଼ା। କେବେ କେମିତି ଛୁଟିରେ ଘରକୁ ଆସେ। ଅମରେନ୍ଦ୍ର ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ। ଗବେଷଣାଗାରରେ କଟିଯାଏ ଦିନର ତିନିଭାଗ ସମୟ। ସତ୍ୟବତୀ ଖବର କାଗଜରେ ଦେଖନ୍ତି ପୁଅର ନାଁ। ଦେଖନ୍ତି ବିଶ୍ୱ ଦରବାରରେ ସେ ସମ୍ମାନ ପାଇବାର ଫଟୋ। ଥରେ ନୁହଁ, ଅନେକ ଥର। ତାକୁ ସେ ସବୁଦିନ ପାଇଁ ତାଙ୍କ ପାଖରେ ରଖି କ'ଣ ବେଶି ଆନନ୍ଦ ପାଇ ଥାଆନ୍ତେ ?

ଅଭିଜିତ୍ ସତ କହିଥିଲେ, ଅମର ସାରା ବିଶ୍ୱର ପୁଅ। ଦେଖିଚାହିଁ ବୋହୂ କରିଥିଲେ ସେ, ଲକ୍ଷ୍ମୀଟିଏ। ଘର ସମ୍ଭାଳିବ, ତାଙ୍କ ବୈଜ୍ଞାନିକ ପୁଅର ଯତ୍ନ ନେବ। ପାଠ ପଢ଼ିଛି ଖୁବ୍, କିନ୍ତୁ ବାହାରକୁ ଚାକିରୀ କରି ଯିବନି।

ପରିବାରକୁ ସୁନ୍ଦର କରିବା ପାଇଁ କେତେ ଯୋଜନା ସେମାନଙ୍କର। ଏଇ ପାଗଳା ପ୍ରତାପରୁଦ୍ରଟା କେତେ କାନ୍ଦୁଥିଲା ଜନ୍ମବେଳେ। ଟିକିଏ ଟିକିଏ କଥାରେ ରାଗି କାନ୍ଦି ତଳେ ଗଡୁଥିଲା। ଭାରି ଅବୁଝା, ଚାରି ବର୍ଷର ପିଲା, ସାମାନ୍ୟ ଗାଳି ଦେଲେ ବି ଘର ଛାଡ଼ି କୁଆଡ଼େ ଚାଲି ଯାଉଥିଲା। ମନେ ଅଛି, ସେଦିନ ବର୍ଷାରେ ଗାଡ଼ି ଧରି ପ୍ରତାପକୁ ଖୋଜି କେତେ ରାତିରେ ଫେରିଲେ ଅଭିଜିତ୍। ସହର ଶେଷ ଭାଗରେ ଗୋଟାଏ ଦୋକାନ ବାରଣ୍ଡାରେ ଚୁପ୍‌ଚାପ୍ ବସି ବର୍ଷା ଛାଡ଼ିବାକୁ ଅପେକ୍ଷା କରିଥିଲା ସେ। ଜିଦିଆ ପୁଅକୁ ଜବରଦସ୍ତ ଟେକି ଗାଡ଼ିରେ ବସାଇ କେତେ ବୁଝାଇ ଶେଷରେ ଘରକୁ ଆଣିଲେ। ଏମିତି କେତେଥର ହୋଇଛି। ସେଥିପାଇଁ ଘରେ ସମସ୍ତେ କେତେ ସତର୍କ। ଭାଇ ଭଉଣୀ, ଚାକର ପୂଝାରୀ ସମସ୍ତଙ୍କୁ ସାବଧାନ କରା ହୋଇଥାଏ- ପ୍ରତାପକୁ କେହି କିଛି କହିବନି। ଶେଷକୁ ପ୍ରତାପ ହେଲା ତାଙ୍କ ପାଇଁ ବଡ଼ ସମସ୍ୟା। ଅଫିସ୍‌ରୁ ବାରମ୍ବାର ଫୋନ୍ କରି ପଚାରନ୍ତି ଅଭିଜିତ୍, "ସତୀ, ପ୍ରତାପ ଏବେ ଘରେ ଅଛି ତ, ମିଂଙ୍କାସ୍ କେମିତି ? ଖେଳୁଛି ଯଦି ଖେଳୁ, ପଢ଼ିବାକୁ ବାଧ କରନା।"

ଶେଷକୁ ପୁଅକୁ ନେଇ ଯାଇଥିଲେ ସେମାନେ ଜଣେ ବିଶିଷ୍ଟ ମନସ୍ତତ୍ତ୍ୱବିତ୍‌ଙ୍କ ପାଖକୁ। ଅବଶ୍ୟ ବଡ଼ ହେବା ପରେ ପ୍ରତାପ ଅନେକଟା ବଦଳି ଯାଇଥିଲା। କିନ୍ତୁ ଆଜିର ଏ ରାଗ ଦେଖିଲେ ତାଙ୍କର ମନେ ହେଉଛି ସେ ଯେମିତି ଟିକିଏ ବି ବଦଳି ନାହିଁ।

ସେପାଖରୁ ପ୍ରତାପଙ୍କ ପାଟି ଶୁଣା ଯାଉଛି। ସେ କହୁଛନ୍ତି, "ଓହୋ, ସୀମା,ଲୋପାଙ୍କ କଥା ତୁ କାହିଁକି କହୁଛୁ? ଏ ଘର ପାଇଁ ସେମାନଙ୍କର ଦାୟିତ୍ୱ ସରି ଯାଇଛି ସେମାନଙ୍କ ବାହାଘର ପରେ ପରେ। ତା' ନ ହେଲେ ଏଇ କଥା ପଚାରି ତୋ ଭାଉଜ ସେମାନଙ୍କ ପାଖକୁ ଚିଠି ଲେଖିଥିଲା ଯେ ସୀମାଠୁ କେବଳ ଉତ୍ତର ମିଳିଲା। ଲୋପା ଚିଠି ଦେଲେ ବି ଜାଣି ଜାଣି ଏ ବିଷୟଟି ବାଦ୍ ଦେଇ ଉପର ଠାଉରିଆ କରି ଦୁଇ ଧାଡ଼ି ଲେଖି ଦେଇଛି।"

ସତ୍ୟବତୀ ଛଳଛଳ ଆଖିରେ ଠାକୁରଙ୍କୁ ହାତ ଯୋଡ଼ି କହିଲେ, "ଠାକୁରେ, ମୋ ଝିଅ ଦୁହିଁଙ୍କୁ ଏମିତି ସୁଖରେ ରଖିଥାଅ। ଏଠାକାର କି ଦାୟିତ୍ୱ ସେ ନେବେ? ତାଙ୍କ ଛୁଆ ପିଲା, ସ୍ୱାମୀ ସଂସାର ନେଇ ସେମାନେ ସୁଖରେ ଥାଆନ୍ତୁ। ସମସ୍ତଙ୍କ ସୁଖ ଦେଖି ମୋ ଜୀବନ ଚାଲିଯାଉ।"

ବିଷ୍ଣୁ ପ୍ରତିମା ଫୁଲ, ଚନ୍ଦନ ସୁଶୋଭିତ ହୋଇ ହସୁଥିଲେ। ହାତ ଯୋଡ଼ି ତନ୍ମୟ ଭାବରେ ତାଙ୍କୁ ଚାହିଁ ରହିଥିଲେ ସତ୍ୟବତୀ।

ସେ ତନ୍ମୟ ଭାବ କଟିଗଲା ବୋହୂ ନିରୁପମାଙ୍କ ଡ଼ାକରେ। ନିରୁପମା ଗମ୍ଭୀର ମୁହଁରେ ଠାକୁର ଘର କବାଟ ପାଖରେ ଠିଆ ହୋଇ ପଚାରୁଛନ୍ତି, "ବୋଉ, ଲୋପାଙ୍କ ଚିଠି କେଉଁଠି ରଖିଛ କି?"

"ଚିଠି? ହଁ, ହଁ, ମୋ ତକିଆ ତଳେ ଅଛି।" ସତ୍ୟବତୀ ଶାନ୍ତ ସ୍ୱରରେ କହିଲେ।

କିନ୍ତୁ କ'ଣ ଯେ ସେମାନଙ୍କର ସେଇ ଚିଠି କଥା ପଡ଼ିଛି? ମୁଁ ତ କିଛି ବୁଝି ପାରୁନି। ମନକୁ ମନ ଭାବି ହେଲେ ସତ୍ୟବତୀ।

ସେ ପାଖରୁ ଚନ୍ଦ୍ରଶେଖରର କଥା ଶୁଣା ଯାଉଛି। ସେ କହୁଛି, "କାହିଁ ଭାଉଜ, ସୀମା ପରା ଉତ୍ତର ଦେଇଛି, ହେଇ ଦେଖୁନ, ସେ ତ ଦାୟିତ୍ୱ ନେବାକୁ ସ୍ପଷ୍ଟ ମନା କରି ଦେଇଛି। ତେବେ ଶେଷକୁ ମୋତେ ସବୁ ଦାୟିତ୍ୱ ଦେବାକୁ ତୁମର ଇଚ୍ଛା।"

ସତ୍ୟବତୀ ମନକୁ ମନ ପଚାରିଲେ- କ'ଣ ସବୁ କହୁଛି ଯେ ଚନ୍ଦ୍ର। ତା'ର ଶାନ୍ତ, ସୁନ୍ଦର ମୁହଁରେ ଏମିତି କଥାଗୁଡ଼ା ଆଦୌ ଶୋଭା ପାଏ ନାହିଁ। ସେ ଯେତେବେଳେ ଖୁବ୍ ବିରକ୍ତ ହୁଏ, ତାକୁ ଠିକ୍ ଏଇ କଥା କହନ୍ତି ସତ୍ୟବତୀ। ପିଲାଦିନରୁ ସେ ରୋଗିଣାଟାଏ। ସବୁବେଳେ କିଛି ନା କିଛି ରୋଗ ଭୋଗୁଥିବ।

ଚାରି ପାଞ୍ଚ ବର୍ଷ ବୟସରେ ପୋଲିଓ ଆକ୍ରାନ୍ତ ହୋଇ ଡ଼ାହାଣ ଗୋଡ଼ ସାମାନ୍ୟ ସରୁ ହୋଇ ଯିବାରୁ ଅଳ୍ପ କିଛିଦିନ ଆଦୌ ଚାଲି ପାରୁ ନ ଥିଲା ସେ। ତା'ପରେ ବହୁ ଚିକିତ୍ସା ଓ ଯତ୍ନରେ ସୁସ୍ଥ ହେଲା ସେ। ତାକୁ କୋଳରେ ଧରି କେତେ ରାତି ତାଙ୍କର ଅନିଦ୍ରାରେ କଟି ଯାଇଛି।

ଅଭିଜିତ୍ କହନ୍ତି, "ପାଳି କରି ଅଧା ଅଧା ଚାହିଁବା। ତୁମେ ଆଗ ଶୁଅ, ତା' ପରେ ମୁଁ।"

ସତ୍ୟବତୀ କହନ୍ତି, "ତୁମେ ଆଗ .....।"

ସେ କ'ଣ କେବେ ଭାବିଥିଲେ ଚନ୍ଦ୍ରଟି ତାଙ୍କର କେବେ ଭଲ କରି ଚାଲିବ! ପାଠ ଶାଠ ପଢ଼ି ମଣିଷ ହେବ! ସବୁ ସେଇ ଇଷ୍ଟ ଦେବ ବିଷ୍ଣୁଙ୍କର ଦୟା। ପ୍ରଭୁଙ୍କର କରୁଣା ପାଇ ପିଲାଟି ତାଙ୍କର ଜୀବନଯୁଦ୍ଧରେ ବିଜୟୀ।

ପୂଜା ଶେଷରେ ଠାକୁରଙ୍କ ପାଖରେ ମୁଣ୍ଡ ନୁଆଇଁ ଭକ୍ତିଭରା ପ୍ରଣତି ଜଣାଇଲେ ସତ୍ୟବତୀ। କିନ୍ତୁ ଆଜି ଏ ବେଳା ସେ ଧ୍ୟାନ କରିପାରିବେନି। ପ୍ରତାପଟା ଯାହା ପାଟି କରୁଛି ନା! ହେଇତ ବୋହୂ ତାକୁ କହୁଛି -

"କାହିଁକି ଭଲା ଏଡ଼େ ପାଟି କରୁଛ କହିଲ? ଏସବୁ ଶୁଣି ବୋଉ ମନକଷ୍ଟ କରିବେନି?"

"ମନ କଷ୍ଟ କରିବ ତ କରୁ। ମୁଁ ଆଉ ସମ୍ଭାଳି ପାରିବି ନାହିଁ। ସହିବାର ଗୋଟିଏ ସୀମା ଅଛି। ବାପା ଯିବା ପରେ ଦୀର୍ଘ ସତେଇଶ ବର୍ଷ ଧରି ସେ ମୋରି ପାଖରେ ରହିଛି। କାହିଁ କେହି ତ ଦିନେ ତା' ଦାୟିତ୍ୱ ନେବାର ନାଁ ଧରିଲେନି। ଆମେ କ'ଣ ଚିରଦିନ ଧରି ତା'କୁ ପାଖରେ ରଖିଥିବୁ।" ପ୍ରତାପରୁଦ୍ର ପ୍ରଜ୍ୱଳିତ ହୋଇ ଚିତ୍କାର କରୁଥିଲେ।

ଚନ୍ଦ୍ରଶେଖର କହିଲେ, "କିନ୍ତୁ ଭାଉଜ ତ ନିଜେ ଦେଖିଛନ୍ତି, ସୁରମା କିପରି ରାଗିଯାଏ ସେ ଜାଣନ୍ତି। ଆଉ ବୋଉର ଛୁଆଁଛୁତ ବାରଣ, ଏ ସବୁ ତାକୁ ଆଦୌ ଭଲ ଲାଗେନି। ବୋଉ ମଧ୍ୟ ଏ ସବୁ ସହି ଯିବାକୁ ପ୍ରସ୍ତୁତ ନୁହେଁ। ତୁମେ କୁହ, ଘରେ ଅଶାନ୍ତି ବଢ଼ିବାକୁ ମୁଁ କିମିତି ଦେବି?"

ନିରୂପମା ହସି ହସି କହୁଛନ୍ତି, "ହଁ ଆମେ ତ ଅଛୁ ସର୍ବଂସହା, ସେଥିପାଇଁ ତୁମେ ସବୁ ନିଶ୍ଚିନ୍ତ ହୋଇ ଯାଉଛ?"

କଥା ଶେଷରେ ପ୍ରତାପରୁଦ୍ର ତାଙ୍କ ଶେଷ ନିଷ୍ପତ୍ତି ଶୁଣାଇ କହିଲେ,

''ଆଉ ଏ ବିଷୟରେ କିଛି ତୋର କହିବା ଦରକାର ନାହିଁ, ଚନ୍ଦ୍ର; ମୁଁ ଠିକ୍ କଲି ତୁ ରାତି ଗାଡିରେ ବୋଉକୁ ନେଇ ବାରିପଦା ଯିବୁ।''

ସତ୍ୟବତୀ ପାଷାଣ ହୋଇଗଲେ। ନିଜକୁ ନିଜେ ବିଶ୍ୱାସ ନ କଲା ଭଳି ପଚାରିଲେ - ସକାଳୁ ଏତେ ସମୟ ଧରି ତେବେ ମୋରି କଥା ଆଲୋଚନା ହେଉଥିଲା! ତାଙ୍କର ସେଇ ପୁଅ ପ୍ରତାପ ସତେଇଶ ବର୍ଷ ଧରି ତାଙ୍କୁ କଷ୍ଟରେ ସମ୍ଭାଳିଛି ବୋଲି କହିଲା! ହଁ, ସେ କେତେ ଥର ରାଗିଛନ୍ତି, ରୁଷିଛନ୍ତି। ଧର୍ମଶାସ୍ତ୍ରରୁ ବାଣୀ ଉଦ୍ଧାର କରି ଧର୍ମ ଅଧର୍ମ କଥା କହିଛନ୍ତି। କେତେଥର ତାଙ୍କ ଦେହ ଅସୁସ୍ଥ ହୋଇ ସେ ବିଛଣାରେ ପଡିଛନ୍ତି ମଧ୍ୟ। କିଏ -ଏହି ବୋହୂ, ପୁଅ, ନାତି, ନାତୁଣୀ ହିଁ ତାଙ୍କ ସେବା କରିଛନ୍ତି। କିନ୍ତୁ ସେ ତ କେବେ ଭାବି ନ ଥିଲେ ଯେ ଦିନେ ଭାଗ ବାଣ୍ଟି ହେଲା ଭଳି ହିସାବପତ୍ର କରି ସେମାନେ ତାଙ୍କୁ ପାଖରେ ରଖିବେ!

ସେ କ'ଣ ଶୁଣୁଛନ୍ତି, ତାଙ୍କର ପିଲାମାନେ କେହି ତାଙ୍କର ଦାୟିତ୍ୱ ନେବାକୁ ଚାହାନ୍ତି ନାହିଁ!

ସେଇ ବୋହୂ, ଯେତେବେଳେ ତା'ର ପିଲାମାନେ ସାନ ସାନ ହୋଇଥିଲେ ପନ୍ଦରଟା ଦିନ ତାଙ୍କୁ ତୀର୍ଥ କରିବାକୁ ଛାଡି ନଥିଲା। ଏଇ ହାତରେ ପ୍ରତାପର ଚାରୋଟି ପିଲାଙ୍କୁ ସେ ମଣିଷ କରିଛନ୍ତି, ସବୁ ଦରକାର ସରି ଯାଇଛି। ବାସ୍ତରି ବର୍ଷର ବୁଢ଼ୀଟା ଆଉ କି କାମରେ ଲାଗି ପାରିବ ଯେ?

ସତ୍ୟବତୀ ଗମ୍ଭୀର ହେଲେ, ଇଷ୍ଟଦେବଙ୍କ ପାଦତଳେ ଥୁଆ ହୋଇଥିବା ସ୍ୱାମୀଙ୍କ ଫଟୋକୁ ଚାହିଁ ଅଭିମାନରେ ତାଙ୍କ ଆଖିକୁ ପାଣି ଚାଲି ଆସିଲା। ତାଙ୍କୁ ଚାହିଁ ମନେ ମନେ ସେ କହିବାକୁ ଲାଗିଲେ, ''ଦେଖିଲ ତ, ଏଇ କଥା ଶୁଣେଇବାକୁ ତୁମ ପିଲାମାନଙ୍କ ପାଖରେ ମୋତେ ଛାଡ଼ି ଚାଲିଗଲ। ଆଜି ପ୍ରତାପ ମନେ ପକେଇ ଦେଲା, ତୁମେ ଯିବା ପରେ ମୁଁ ଦୀର୍ଘ ସତେଇଶି ବର୍ଷ ବଞ୍ଚି ସାରିଲିଣି, ଆଉ ପାରିବି ନି। ମୋତେ ନେଇଯାଅ, ମୋତେ ନେଇଯାଅ।''

ସତ୍ୟବତୀ ପିଲାଙ୍କ ଭଳି କାନ୍ଦି ଉଠିଲେ। ଶେଷରେ ଆଖିରୁ ଲୁହ ପୋଛି ଧୀରେ ଠାକୁର ଘରୁ ବାହାରି ଆସି ମୁହଁଟା ଧୋଇ ନେଲେ। ବୈଠକ ଘର ପର୍ଯ୍ୟନ୍ତ ଦୁର୍ବଳ ପାଦ ଦୁଇଟା ଘୋଷାରି ନେଇ ଦୃଢ଼ ଭାବରେ ତାଙ୍କ ଶେଷ ନିଷ୍ପତ୍ତି ଶୁଣାଇ ସେ କହିଲେ, ''ନା- ମୁଁ ଆଉ ତୁମମାନଙ୍କର ଗଳଗ୍ରହ ହେବାକୁ

ଚାହେଁନା । ଆଜି ମୁଁ ଏଇ ସକାଳ ବସ୍‌ରେ ଗାଁକୁ ଚାଲିଯାଉଛି, ତୁମେ କେହି ବ୍ୟସ୍ତ ହେବାର ଦରକାର ନାହିଁ, କେହି ମୋତେ ଛାଡ଼ି ଆସିବାର ବି ଆବଶ୍ୟକତା ନାହିଁ। ମୁଁ ନିଜେ ଚାଲିଯାଇ ପାରିବି।''

ସତ୍ୟବତୀ ଆଉ କାହାକୁ ନ ଚାହିଁ ଠାକୁର ଘର ପାଖ ଛୋଟ ଘରଟାରେ ତାଙ୍କର ଲୁଗାପଟା କେଇଖଣ୍ଡ ସଜାଡି ନେବାକୁ ତରତର ହୋଇ ବାହାରି ଚାଲିଗଲେ।

□ □ □

* ଆକାଶବାଣୀ 'ବିବିଧଭାରତୀ' ସୌଜନ୍ୟରୁ
* ଝଙ୍କାର, ୧୯୭୮,
* 'ଦର୍ପଣ', ଦୂରଦର୍ଶନ, ୧୯୮୬

# ସେମାନେ ଆସିଛନ୍ତି

ସମୟ ମଧ୍ୟାହ୍ନ। ଗ୍ରୀଷ୍ମର ବିଦାୟ ବେଳା ଆସନ୍ନ। ଅଥଚ ମୌସୁମୀ ପ୍ରବାହର କୌଣସି ଲକ୍ଷଣ ଏ ପର୍ଯ୍ୟନ୍ତ ଦେଖାଯାଇନି। ବାହାରେ ରୌଦ୍ରର ଅସହ୍ୟ ପ୍ରକୋପ। ସେଇ ଉଷ୍ଣପ୍ରବାହ ମଧ୍ୟରେ ଜିପ୍‌ଟିଏ ଧୂଳି ଉଡ଼ାଇ ଚାଲିଛି। ସେମାନେ ବାହାରିଛନ୍ତି ଗସ୍ତରେ।

ସଂପ୍ରତି ରାଜ୍ୟରେ ଘଟିଯାଇଥିବା ଭୟଙ୍କର ବାତ୍ୟାରେ ବହୁ କ୍ଷୟକ୍ଷତିର ତାଲିକା ପ୍ରସ୍ତୁତ କରିଛନ୍ତି ସରକାରୀ କର୍ମଚାରୀମାନେ। ବାତ୍ୟାବିଧ୍ୱସ୍ତ ଅଞ୍ଚଳରେ ଗୃହ ନିର୍ମାଣ ଯୋଜନାକୁ ତ୍ୱରାନ୍ୱିତ କରାଯିବା ପାଇଁ ସରକାରୀ ଅଫିସରମାନଙ୍କର ବାରମ୍ବାର ଯିବା ଆସିବା ଲାଗିଛି।

ସେଦିନ ଆସିଛନ୍ତି ଖୋଦ୍ କମିଶନର୍ ସାହେବ। ସାଙ୍ଗରେ ଜିଲ୍ଲାପାଳ ଏବଂ ପାଖ ସବ୍‌ଡ଼ିଭିଜନ୍‌ର ଏସ୍.ଡ଼ି.ଓ। ପ୍ରକୃତରେ କହିବାକୁ ଗଲେ ଏସ୍.ଡ଼ି.ଓ ଶ୍ରୀ ଗନ୍ତାୟତଙ୍କର ସବ୍‌ଡ଼ିଭିଜନରେ କୌଣସି କାର୍ଯ୍ୟ ତଦାରଖ କରିବାଟା କମିଶନରଙ୍କ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ନ ଥିଲା। ମାତ୍ର ସେଇ ରାସ୍ତାରେ ଏ ସବ୍‌ଡ଼ିଭିଜନ୍‌ଟି। ତେଣୁ ଶ୍ରୀ ଗନ୍ତାୟତ ମଧ୍ୟ ସୌଜନ୍ୟ ଦୃଷ୍ଟିରୁ ଯାଇଥିଲେ ତାଙ୍କ ସାଙ୍ଗରେ।

ସ୍ଥାନୀୟ ରେଷ୍ଟସେଡ୍‌ରେ ଚା'ପାନ ପରେ ସେମାନେ ଚାଲିଛନ୍ତି ସୁଦୂରବର୍ତ୍ତୀ ରାମପୁର ବ୍ଲକ ଉଦ୍ଦେଶ୍ୟରେ। ଶ୍ରୀ ଗନ୍ତାୟତଙ୍କର ସବ୍‌ଡ଼ିଭିଜନ୍‌ର ଇଲାକା ଶେଷପ୍ରାୟ। ଜିଲ୍ଲାପାଳ ଶ୍ରୀ ଶର୍ମା କହିଲେ, ''ମିଷ୍ଟର ଗନ୍ତାୟତ, ଏଥର ଆମେ ଆପଣଙ୍କଠାରୁ ବିଦାୟ ନେଉଛୁ।''

''ନାହିଁ ସାର୍ ! ଚାଲନ୍ତୁ, ଆପଣମାନଙ୍କୁ ରାମପୁର ଡାକବଙ୍ଗଳାରେ ଛାଡ଼ିଦେଇ ମୁଁ ଫେରି ଆସିବି।''

''ଦ୍ୟାଟ୍ ଇଜ୍ ଫାଇନ୍, ମି. ଗନ୍ତାୟତ ! ୟୁ ଡ୍ରିଭ୍ ହେଭ୍ ୟୋର୍ ଲଞ୍ଚ୍ ଉଇଥ୍ ଅସ୍।''

''ଥ୍ୟାଙ୍କ୍ ୟୁ, ସାର୍ !'' କମିଶନରଙ୍କ କଥାରେ ବିନମ୍ର ସମ୍ମତି ଜଣାଇଲେ ଶ୍ରୀ ଗନ୍ତାୟତ। କିଛି ବାଟ ଏମିତି ନୀରବତା ମଧ୍ୟରେ କଟିଯିବା ପରେ ସେ ହଠାତ୍ ଜିଲ୍ଲାପାଳ ଶ୍ରୀ ଶର୍ମାଙ୍କୁ ଅନୁଚ୍ଚ ସ୍ୱରରେ ପ୍ରଶ୍ନ କଲେ, ''ସାର୍, ଏତେ ଗୁଡ଼ିଏ ଲୋକଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଛି ତ ?''

କମିଶନରଙ୍କ ଜିପ୍‌ର ଠିକ୍ ପଛରେ ଚାଲିଥିଲା ଶ୍ରୀ ଗନ୍ତାୟତଙ୍କର ଜିପ୍। ସେଥିରେ ବସିଥିଲେ ଅନ୍ୟାନ୍ୟ କର୍ମଚାରୀମାନେ। ସେଇଆଡ଼େ ଥରେ ଚାହିଁଦେବା ପରେ ହଠାତ୍ କାହିଁକି ଏମିତି ପ୍ରଶ୍ନଟି ଉଠିଥିଲା ତାଙ୍କ ମନରେ।

ଶ୍ରୀ ଗନ୍ତାୟତଙ୍କର ଏ ପ୍ରଶ୍ନରେ ଜିଲ୍ଲାପାଳଙ୍କର କପାଳର କେତୋଟି ରେଖା କିଛି ସମୟ ପାଇଁ କୁଞ୍ଚିତ ହୋଇଯାଇଥିଲା। କିନ୍ତୁ ଠିକ୍ ପରେ ପରେ ପ୍ରଫୁଲ୍ଲ ଚିତ୍ତରେ ସେ କହିଲେ, ''ସବୁ ଠିକ୍ ଅଛି। ବହୁ ପୂର୍ବରୁ ଏସ୍.ଡି.ଓଙ୍କୁ ଖବର ଦିଆହୋଇଛି। ତେଣୁ ବ୍ୟସ୍ତ ହେବାର କୌଣସି କାରଣ ନାହିଁ।''

ଏତିକି କହିଦେବା ପରେ ଶ୍ରୀ ଶର୍ମା ମନେ ପକାଇବାକୁ ଚେଷ୍ଟା କଲେ କିଛି ଦିନ ତଳର ଘଟଣା ସବୁକୁ। ସବୁ ଚିଠିର ଉତ୍ତର ଦେବା ବିଷୟ ତାଙ୍କର ମନେ ରହିବା ସ୍ୱାଭାବିକ ନ ହେଲେ ମଧ୍ୟ କମିଶନରଙ୍କ ଗସ୍ତ କାର୍ଯ୍ୟକ୍ରମ ନେଇ ଲେଖିଥିବା ଅତି ଦରକାରୀ ଚିଠିଟି ବିଷୟ ସେ ଆଦୌ ଭୁଲି ଯାଇ ନାହାନ୍ତି। ଏକଥା ଥରେ ଭାବି ନେବା ପରେ ସେ ପୁଣି ଅବିଚଳିତ ଭାବରେ ବସି ରହିଲେ।

ଜିପ୍ ଚାଲିଛି। କମିଶନରଙ୍କ ସିଗାରେଟ୍‌ର ଧୂଆଁରେ ପରସ୍ପରଙ୍କ ମୁଖମଣ୍ଡଳର ଭାବ ସୁସ୍ପଷ୍ଟ ଭାବେ ଦେଖା ନ ଯାଉଥିଲେ ମଧ୍ୟ ଶ୍ରୀ ଗନ୍ତାୟତ ଯେ ଖୁବ୍ ଅସ୍ଥିର ହୋଇ ଉଠିଛନ୍ତି, ଏକଥା ଅନୁଭବ କରିଥିଲେ ଜିଲ୍ଲାପାଳ ଶ୍ର ଶର୍ମା। ଏଥର ଧୀର ସ୍ୱରରେ ସେ ପଚାରିଲେ, ''ମିଷ୍ଟର ଗନ୍ତାୟତ, ଆପଣଙ୍କ ଦେହ ଭଲ ନାହିଁ କି ?''

''ଠିକ୍ ଅଛି ସାର୍, କିନ୍ତୁ.... ।'' ଟିକିଏ ଦୂରରେ ଦେଖାଯାଉଥିବା ଡାକବଙ୍ଗଳା

ଆଡ଼େ ହାତ ବଢ଼ାଇ ସେ ପୁଣି କହିଲେ, ''ସିଆଡ଼େ ଦେଖନ୍ତୁ।''

ଶ୍ରୀ ଶର୍ମା ଡାକବଙ୍ଗଳା ଆଡେ ଚାହିଁ ବିସ୍ମିତ ହେଲେ। ଏହି ସମୟରେ ନିଶ୍ଚିତ ଭାବରେ ବହୁ ଗାଡ଼ି ଏବଂ ସ୍ଥାନୀୟ ଅଫିସରମାନେ କମିଶନର୍ ସାହେବଙ୍କୁ ଅପେକ୍ଷା କରିଥାଆନ୍ତେ, ଅଥଚ କୁଆଡ଼େ କେହି ନାହାନ୍ତି। କେବଳ ଡାକବଙ୍ଗଳାର କାଠଫାଟକର ବନ୍ଦ ତାଲାଟା ତାଙ୍କୁ ତାସଲ୍ୟ କଲାଭଳି ପବନରେ ହଲି ହଲି ବାଡ଼େଇ ହେଉଥିଲା।

କମିଶନର୍‌ଙ୍କ ଜିଜ୍ଞାସାରେ ଶ୍ରୀ ଶର୍ମାଙ୍କର ବିମୋହ ଭାବ କଟିଯାଇଥିଲା। ସେ ବିରକ୍ତିରେ ପଚାରିଲେ, ''ଓଃ, କମିଶନର୍‌ଙ୍କ ପାଇଁ ତୁମେ ତେବେ ଏଇ ବ୍ୟବସ୍ଥା କରିଛ ?''

ସମସ୍ତେ ନିରୁତ୍ତର। କମିଶନର୍ କିନ୍ତୁ ପୁଣି ଗର୍ଜି ଉଠିଲେ, ''ଆଇ ଫିଲ୍ ଲାଇକ୍ ଥ୍ରୋଇଙ୍ଗ୍ ୟୁ ଆଉଟ୍ ଅଫ୍ ଦି ଜିପ୍।''

କମିଶନର୍‌ଙ୍କର ଏହି କ୍ଷଣକୋପୀ ପ୍ରକୃତି ସହିତ ଜିଲ୍ଲାପାଳ ପୂର୍ବରୁ ଅଭ୍ୟସ୍ତ ଥିଲେ ମଧ୍ୟ ସେ ନିଜେ ଯେ ଏସବୁର ଶିକାର ହେବେ, ଏପରି ଧାରଣା ସେ ଆଦୌ କରି ନ ଥିଲେ। ସବୁ ତ ଠିକ୍ ଥିଲା, ଏସ୍.ଡ଼ି.ଓଙ୍କୁ ଚିଠି ଦିଆହୋଇ ସବୁ ବ୍ୟବସ୍ଥା କରିବାକୁ ଖବର ଦିଆଯାଇଥିଲା। ଦୁଇଘଣ୍ଟା ବିଶ୍ରାମ ପରେ ଅପରାହ୍ଣରେ ସେମାନେ କାର୍ଯ୍ୟ ତଦାରଖ ପାଇଁ ନିର୍ଦ୍ଦିଷ୍ଟ ଅଞ୍ଚଳକୁ ଯିବାର କଥା। ଅଥଚ....।

''ବୋଧହୁଏ ସାର୍, ସଟ୍‌ରେ ଏ ସବୁ ବ୍ୟବସ୍ଥା କରାଯାଇଛି। ସେଠାରେ ନିଶ୍ଚୟ ସମସ୍ତେ ଆମ ସମସ୍ତଙ୍କୁ ଅପେକ୍ଷା କରି ଥିବେ।'' ଶ୍ରୀ ଗନ୍ତାୟତ ସାହସର ସହିତ ତାଙ୍କ ବକ୍ତବ୍ୟ ଶେଷ କଲେ।

କମିଶନର୍ ସାହେବ ରାଗରେ ଜଳି ଉଠି ଜିଲ୍ଲାପାଳଙ୍କୁ ଚାହିଁ ରହିଲେ। ତା'ପରେ ହଠାତ୍ କହି ଉଠିଲେ, ''ଦେଖାଯାଉ, ସଟ୍‌ରେ କି ବ୍ୟବସ୍ଥା ହୋଇଛି। ଲେଟ୍ ଅସ୍ ଗୋ ଦେନ୍।''

ଜିଲ୍ଲାପାଳ ଓ ଉତ୍ୟକ୍ତ କମିଶନର୍‌ଙ୍କ କଥୋପକଥନ ମଧ୍ୟରେ ଶ୍ରୀ ଗନ୍ତାୟତ ବହୁ କଷ୍ଟରେ ସ୍ଥାନୀୟ ବ୍ଲକ୍‌ରୁ ନାଜରଙ୍କୁ ତୁରନ୍ତ ଡକାଇ ପଠାଇଲେ। ଭାଗ୍ୟକୁ ଶେଷ ମୁହୂର୍ତ୍ତରେ ନାଜର୍ ପହଞ୍ଚିଯାଇ କହିଲେ, ଜିଲ୍ଲାପାଳଙ୍କର ନିର୍ଦ୍ଦେଶନାମା ବହନ କରି ଥିବା କୌଣସି ପତ୍ର ସେମାନେ ଏ ପର୍ଯ୍ୟନ୍ତ ପାଇ ନାହାନ୍ତି

ଏବଂ ବି.ଡି.ଓ ମଧ୍ୟ ଏସବୁ କିଛି ନ ଜାଣି ଗସ୍ତରେ ଚାଲିଯାଉଛନ୍ତି।

ଡ୍ରାଇଭର୍‌କୁ ଗାଡ଼ି ଷ୍ଟାର୍ଟ କରିବା ପାଇଁ ନିର୍ଦ୍ଦେଶ ଦେଇ ଶ୍ରୀ ଗନ୍ତାୟତ ନାଜର୍‌ଙ୍କୁ ସଂକ୍ଷିପ୍ତରେ କଥାଟା ବୁଝାଇ ଦେବାକୁ ଚେଷ୍ଟା କଲେ।

ଡାକବଙ୍ଗଳା ପାଖରୁ ରାମପୁର ବ୍ଲକ୍‌ର ସେଇ ନିର୍ଦ୍ଦିଷ୍ଟ ଗ୍ରାମରେ ପହଞ୍ଚିବାକୁ କମ୍‌ରେ ଦୁଇରୁ ଅଢ଼େଇଘଣ୍ଟା ସମୟ ନିଶ୍ଚୟ ଲାଗିବ। ଅଥଚ ସେମାନେ ପହଞ୍ଚିବା ପୂର୍ବରୁ ସେଠାକାର ବିଶ୍ରାମାଗାରରେ କମିଶନରଙ୍କ ସମ୍ମାନାର୍ଥେ ମଧ୍ୟାହ୍ନ ଭୋଜନର ସମସ୍ତ ଆୟୋଜନ ନିଶ୍ଚିତ ଭାବେ କରାଯିବା ଉଚିତ୍।

ହସି ହସି ନାଜର୍ କହିଲେ, ‘‘ଆପଣ କିଛି ଭାବନ୍ତୁ ନାହିଁ ସାର୍, ସେ ଦାୟିତ୍ୱ ମୋର।’’

ଶ୍ରୀ ଗନ୍ତାୟତ ଆଉ କୌଣସି ବାକ୍ୟବ୍ୟୟ ନ କରି ଡ୍ରାଇଭର୍ ପାଖ ସିଟ୍‌ରେ ବସି ଯାଇଥିଲେ।

ଜିପ୍ ଧାଇଁଥିଲା ଆଗକୁ। ଗ୍ରାମର ରାସ୍ତା ଆଦୌ ଭଲ ନୁହେଁ। ତେଣୁ ଗାଡ଼ିଟି କେଉଁଠାରେ ସ୍ପିଡ୍ କମାଇ ଚାଲିଥିଲା ତ କେଉଁଠାରେ ପ୍ରାୟ ରହିଯାଇ ଷ୍ଟାର୍ଟ ବନ୍ଦ କରି ଟିକିଏ ସମୟ ପରେ ପୁଣି ଧୀରେ ଆଗେଇ ଯାଉଥିଲା।

ସମୟ କଟାଇବା ପାଇଁ ଜିଲ୍ଲାପାଳ ଶ୍ରୀ ଶର୍ମା କମିଶନର୍ ସାହେବଙ୍କ ସହିତ ଆଲୋଚନା କରୁଥିଲେ ରାଜ୍ୟର ବହୁ ସମସ୍ୟା ଏବଂ ଏଇ ଗ୍ରାମମାନଙ୍କର ରାସ୍ତାଘାଟ, ଗ୍ରାମବାସୀମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଇତ୍ୟାଦି ବହୁ ସମସ୍ୟା ସମ୍ପର୍କରେ। ସେଇ ଅସମାନ ରାସ୍ତାରେ ଜିପ୍ ଚାଲିବାର କଷ୍ଟ କ୍ଷଣକ ପାଇଁ ଭୁଲିଯିବାକୁ ସେମାନେ ବେଶ୍ ଗପ ଆରମ୍ଭ କରିଦେଇଥିଲେ। ଶ୍ରୀ ଗନ୍ତାୟତ କଥା ମଝିରେ ଏସବୁରେ ଯୋଗ ଦେଉଥିଲେ ମଧ୍ୟ ନାଜର୍‌ଙ୍କ ଶେଷୋକ୍ତିକୁ ବାରମ୍ବାର ମନେ ପକାଉଥିଲେ।

ଶେଷରେ ବିଶ୍ରାମାଗାର ପାଖରେ ସେମାନେ ପହଞ୍ଚିଲେ ନିର୍ଦ୍ଦିଷ୍ଟ ସମୟର ଟିକିଏ ବିଳମ୍ବରେ। ସେମାନଙ୍କର ଅଧଘଣ୍ଟାଏ ଆଗରୁ ପହଞ୍ଚି ଯାଇଥିଲେ ନାଜର୍ ବାବୁ। ଦୁଇଟି ଜିପ୍ ଗାଡିରେ ରନ୍ଧନ କରା ଯାଇଥିବା ଅନେକ ପ୍ରକାରର ସୁସ୍ୱାଦୁ ଖାଦ୍ୟ ଅଣାଯାଇଥିଲା। ସେ ସବୁ ସେ ସଂଗ୍ରହ କରିଥିଲେ ରାମପୁରର କେତେକ ବିଶିଷ୍ଟ ଲୋକଙ୍କ ଘରୁ। କେଉଁ ସଂକ୍ଷିପ୍ତ ରାସ୍ତାରେ ଆସିଲେ ଶୀଘ୍ର ପହଞ୍ଚିଯାଇ ହେବ, ସେ କଥା ଜାଣିଥିଲେ ନାଜର୍। ଅଥଚ କମିଶନର୍‌ଙ୍କ ଜିପ୍‌ର

ଡ୍ରାଇଭରଟି ଏ ଅଞ୍ଚଳ ବିଷୟରେ ଅନଭିଜ୍ଞ ଥିବାରୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବାକୁ ତାକୁ ପ୍ରାୟ ତିନିଘଣ୍ଟା ଲାଗି ଯାଇଥିଲା ।

ଖାଇବା ଟେବୁଲରେ ଶୁଭ୍ର ଟେବୁଲ କ୍ଲଥ ଉପରେ ସଜା ହୋଇ ରହିଥିଲା ପ୍ଲେଟ ସବୁ। ପିଅନମାନେ ଅପେକ୍ଷା କରିଥିଲେ ଆଦେଶ ପାଇବା ମାତ୍ରେ ଖାଦ୍ୟ ପାତ୍ର ସବୁ ନେଇ ଆସିବା ପାଇଁ। ଠିକ୍ ଏତିକିବେଳେ କମିଶନରଙ୍କ ମଧ୍ୟାହ୍ନ ଭୋଜନ ପ୍ରସ୍ତୁତିରେ ଆଉ ଏକ ଅଭାବ ପରିଲକ୍ଷିତ ହେଲା।

କମିଶନର୍ ସାହେବ ହଠାତ୍ ପଚାରିଲେ, ''ଶର୍ମା, କିଛି ଡ୍ରିଙ୍କ୍ସର ଆୟୋଜନ କରିଛ ତ ?''

ଜିଲ୍ଲାପାଳ ଜିଜ୍ଞାସୁ ଦୃଷ୍ଟିରେ ଚାହିଁ ରହିଲେ ଶ୍ରୀ ଗନ୍ତାୟତଙ୍କୁ। ଶ୍ରୀ ଗନ୍ତାୟତ ସେ କକ୍ଷରୁ ନିଷ୍କ୍ରାନ୍ତ ହୋଇ ଆଉ ଥରେ ନାଜର୍‌ଙ୍କର ଶରଣାପନ୍ନ ହେଲେ।

ସେତେବେଳକୁ କମିଶନର୍‌ଙ୍କର ସୌଜନ୍ୟବିରୁଦ୍ଧ ଉତ୍କ୍ଷିପ୍ତ ସ୍ୱରରେ ଉପସ୍ଥିତ ଅନ୍ୟାନ୍ୟ କର୍ମଚାରୀମାନେ ପରସ୍ପରକୁ ଶଙ୍କିତ ଦୃଷ୍ଟିରେ ଚାହିଁ ରହିଥିଲେ।

ଶର୍ମା ସାହେବଙ୍କ ଭଳି ଜଣେ ଜିଲ୍ଲାପାଳ, ଯା' ପୂର୍ବରୁ ଅନ୍ୟ କେଉଁ ଜିଲ୍ଲାରେ ମଧ୍ୟ ନିନ୍ଦିତ ହୋଇ ନଥିଲେ। ଏପରିକି କେନ୍ଦ୍ର ତଥା ରାଜ୍ୟର ଉଚ୍ଚସ୍ତରୀୟ ମନ୍ତ୍ରୀମାନେ ମଧ୍ୟ ତାଙ୍କ ଜିଲ୍ଲାରେ ବିଭିନ୍ନ କାର୍ଯ୍ୟକ୍ରମ ତଦାରଖ କରି ସନ୍ତୋଷ ପ୍ରକାଶ କରିଛନ୍ତି। ହୋଇପାରେ କମିଶନର୍ ସାହେବ ଖୁବ୍ କଡ଼ା ମିଜାଜ୍‌ର ଲୋକ। ମାତ୍ର ଏଭଳି ବ୍ୟବହାର ଆଦୌ ଶୋଭନୀୟ ନୁହେଁ - ସେମାନେ ମନ୍ତବ୍ୟ ପ୍ରକାଶ କଲେ।

ବିଶ୍ରାମ କକ୍ଷ ମଧ୍ୟରେ କମିଶନର ସାହେବଙ୍କର ବାରମ୍ବାର ଚିତ୍କାର ଏବଂ ଟେବୁଲ ବାଡେଇବାର ଶବ୍ଦ ଠିକ୍ ସେମିତି ଚାଲିଥାଏ। ଠିକ୍ ଏତିକିବେଳେ ପହଞ୍ଚିଲେ ନାଜର୍। ବହୁ କଷ୍ଟରେ ସେ ବ୍ୟବସ୍ଥା କରିଥିଲେ କିଛି ଦେଶୀ ପାନୀୟ। ଗୋଟିଏ ସୁଦୃଶ୍ୟ ଟ୍ରେରେ ସଜା ଯାଇଥିଲା ସ୍ୱଚ୍ଛ ଗ୍ଲାସ ଦୁଇଟି। ତା'ପରେ ଗ୍ରାମର କୌଣସି ତରୁଣୀ କମିଶନର୍‌ଙ୍କୁ ମଦ୍ୟ ପରିବେଷଣ କରିବାକୁ ଅନିଚ୍ଛା ପ୍ରକାଶ କରିବାରୁ ନାଜର୍ ନିଜର ବୁଦ୍ଧି ପ୍ରୟୋଗ କରି ସେଇ ବିଶ୍ରାମାଗାରରେ ଝାଡୁ ପାଇଖାନା ସଫା କରୁଥିବା ଜଣେ ମଧ୍ୟବୟସୀ ମହିଳାକୁ ପାଞ୍ଚଟଙ୍କା ବକ୍‌ସିସ୍ ଦେଇ କିଛି ସମୟ ଅଭିନୟ କରିବାକୁ ଡାକି ନେଇ ଆସିଥିଲେ। ତାହା ଘରୁ ନେଇ ଆସିଥିଲେ ଖଣ୍ଡିଏ ପରିଷ୍କାର ରଙ୍ଗୀନ୍ ଶାଢ଼ୀ, ଶାୟା ଏବଂ ବ୍ଲାଉଜ୍,

ଆଉ ତାଙ୍କ ପକେଟ୍‌ରେ ଥିଲା କିଛି ଗୋଲାପ ଫୁଲ।

ନାଜର୍ କହିଲେ "ନେ, ଏ ସବୁ ପିନ୍ଧି ନିଜକୁ ପ୍ରସ୍ତୁତ କରି ଶୀଘ୍ର ଚାଲିଆ।"

ସ୍ତ୍ରୀ ଲୋକଟି ତା ଜୀବନରେ ଏମିତି ସୁଯୋଗ ହୁଏତ କେବେ ପାଇ ନ ଥିଲା। ଶାୟା, ବ୍ଲାଉସ୍ ଉପରେ ଛିଟ ଶାଢ଼ୀ ଖଣ୍ଡିକ ବାଗେଇ ପିନ୍ଧି ମୁଣ୍ଡରେ ଫୁଲ ଖୋସି ଏକ ଅଭିନେତ୍ରୀ ଭଙ୍ଗୀରେ ସେଇ ମଦ୍ୟର ଗ୍ଲାସ ଥିବା ଟ୍ରେଟିକୁ ଦୁଇ ହାତରେ ଧରି ଅତି ସନ୍ତର୍ପଣରେ କୋଠରୀର ବାହାରେ ଅପେକ୍ଷା କଲା ସେ।

ଏଥର କୋଠରୀଟିର ପରଦା ଆଡ଼େଇ ଆଗେଇ ଗଲେ ନାଜର୍। କମିଶନ୍‌ରଙ୍କ ରକ୍ତବର୍ଣ୍ଣର ଚକ୍ଷୁଦ୍ୱୟ କ୍ରୋଧ ଓ ବିରକ୍ତିରେ ଜଳି ଉଠୁଥିଲା। ସେ ଦ୍ୱାରବନ୍ଧ ପାଖରେ ଠିଆ ହୋଇ ନାଜର୍‌ଙ୍କ ଆଡକୁ ଚାହିଁ ପଚାରିଲେ, "କିଏ? କ'ଣ କହୁଛ?"

"ସାର୍, ସେମାନେ ଆସିଛନ୍ତି।"

"କିଏ ଆସିଛନ୍ତି?" କମିଶନର୍‌ଙ୍କ ରାଗ ଆହୁରି ବଢି ଯାଇଥିଲା।

ସେଇ ଜ୍ୱଳନ୍ତ ଚକ୍ଷୁ ଦୁଇଟିକୁ ଚାହିଁ ନିର୍ଭୟରେ ନାଜର୍ କହିଲେ, "ଆଜ୍ଞା, ସ୍ତ୍ରୀ ଲୋକ .... ମହିଳା ସମିତିର .....।"

ଧପ୍ କରି ଲିଭିଗଲା ନିଆଁ। ପାଣି ପଡ଼ିଯିବା ପରେ ଅଗ୍ନିଶାନ୍ତ ହେବା ଭଳି ଦିଶୁଥିଲେ କମିଶନର୍। ସେ ସ୍ୱରକୁ ଯଥା ସମ୍ଭବ କୋମଳ କରି କହିଲେ, "ଆଚ୍ଛା, ଠିକ୍ ଅଛି। ତାଙ୍କୁ ଡାକିଦିଅ।"

ଠିକ୍ ସେତିକିବେଳେ ମୁହଁରେ ହାସ୍ୟର ଛଟା ଖେଳାଇ ସେଇ ମଧ୍ୟବୟସୀ ନାରୀଟି ହାତରେ ଦେଶୀପାନୀୟର ଟ୍ରେଟି ଧରି କୋଠରୀ ମଧ୍ୟକୁ ପଶି ଆସିଥିଲା।

□ □ □

'ଅଧୁନା', ୧୯୭୮

# ଅନେକ ଅଶ୍ରୁ

ବାସନ୍ତୀ ଅପରାହ୍ଣର ଏକ ଅଳସ ପ୍ରହରରେ ଯେତେବେଳେ ଦୋଳାୟମାନ ଗତିରେ ଟ୍ରେନ୍‌ଟି ହଲି ଦୋହଲି ସେଇ ଷ୍ଟେସନ୍‌ଟିର ପୃଷ୍ଠଦେଶରେ ହାଇମାରି ଆସି ଠିଆ ହୋଇ ପଡ଼ିଲା, ସେତେବେଳେ ଏକ କରୁଣ ସ୍ନିଗ୍ଧ ଦୃଷ୍ଟି ଦେଇ ସୁମିତା ପ୍ଲାଟଫର୍ମର ଛାତି ଉପରେ କାହାକୁ ଖୋଜି ହେଉଥିଲା ।

ଗୋଟାକ ପରେ ଗୋଟାଏ ଆଚାଚି, ବଡ଼ ସୁଟ୍‌କେଶ, ବେଡ଼ିଂ କୁଲିକୁ ବଢ଼ାଇ ଦେଉ ଦେଉ କାହାର ସହାସ୍ୟ ସମ୍ଭାଷଣରେ ଚକିତ ହେଲେ ଯଶୋବନ୍ତ ।

ତପନଙ୍କୁ ଯଶୋବନ୍ତଙ୍କ ବାହୁବନ୍ଧନରେ ଆବିଷ୍କାର କରି ସ୍ମିତ ସଲ୍ଲଜ ଭାବରେ ପୁଲକିତ ହେଲା ସୁମିତା ।

''ବହୁଦିନ ପରେ - ହଁ, ବହୁବର୍ଷ ପରେ - ସୁମିତା ତମ ସହ ସାକ୍ଷାତ ।''

କିନ୍ତୁ କାହିଁକି ତପନ ? ଚେଷ୍ଟା କରିଥିଲେ କ'ଣ ଥରେ ମାତ୍ର ସୁମିତା ସହ ସାକ୍ଷାତ ପାଇଁ ତୁମେ ଯାଇ ପାରି ନଥାନ୍ତ ? ସମୟର ବହମାନ ସ୍ରୋତରେ ବହୁଦୂର ଭାସିଯାଇ ତୁମେ ବଦଳିଯାଇଛ, କିନ୍ତୁ କେବେ ଶୁଣିଛ ଅତୀତର ହତାଶ, ଦୀର୍ଘ ନିଃଶ୍ୱାସ ?

ଦୁଃସହ ଅସ୍ଥିରତାର ତାଡ଼ନାରେ ଜର୍ଜରିତ ହେଉଥିଲେ ମଧ୍ୟ ତପନଙ୍କ କଥାରେ ଉତ୍ତର ପରିବର୍ତ୍ତେ କେବଳ ପରିଚିତ ହସ ହସୁଥିଲା ସୁମିତା ।

କୁଲିକୁ ପଇସା ଇତ୍ୟାଦି ଦେଇ ଆବଶ୍ୟକୀୟ କାର୍ଯ୍ୟ ସାରି ଆସି ତପନଙ୍କ

ଗାଡ଼ିରେ କ୍ଲାନ୍ତ ଭାବରେ ବସିଗଲେ ଯଶୋବନ୍ତ।

ତପନ ପ୍ରସ୍ତାବ ଦେଲେ, "ଚାଲ ରେଳଷ୍ଟେ ରେଷ୍ଟୋରାଁରେ କପେ କପେ ଚା' ଖାଇ ଆସିବା।"

ଚା'ର ଆବଶ୍ୟକତା ଚିନିହେଁ ଉପଲବ୍ଧି କରୁଥିଲେ ହେଁ ତପନ ନିଜ ଘର ପରିବର୍ତ୍ତେ ରେଷ୍ଟୋରାଁରେ ଖାଇବାକୁ କାହିଁକି ନିମନ୍ତ୍ରଣ କରୁଛନ୍ତି, ଏକଥା ଭାବିବାକୁ ଅବସର ମିଳି ନଥିଲା। ସଙ୍ଗେ ସଙ୍ଗେ ସେ କହି ପକାଇଲେ, "ଡ଼ି.ଏଫ.ଓଙ୍କ ପୁତ୍ରର ଜନ୍ମଦିନର ନିମନ୍ତ୍ରଣ ରକ୍ଷା ପାଇଁ ପିଲାଙ୍କୁ ନେଇ ଅଗତ୍ୟା ରଞ୍ଜିତାଙ୍କୁ ହିଁ ଯିବାକୁ ହେଲା।"

ତପନ ପୂର୍ବରୁ ବରାଦ କରିଥିବା କଟ୍‌ଲେଟ ଓ ମିଠା ମୁହଁରେ ଦେଉ ଦେଉ ଯଶୋବନ୍ତ କହିଲେ-

"ଗୁଡ଼ାଏ ଖାଇବା ତ ହୋଇଗଲା। ଏବେ ଆଉ ତୋ ବଂଗ୍ଲୋକୁ ନ ଫେରି ବରଂ ମୋ ଆଜିର କାମ ସାରି ଡେରିରେ ଫେରିଲେ କେମିତି ହୁଅନ୍ତା ?"

ତପନଙ୍କ ପ୍ରତିବାଦ ପୂର୍ବରୁ ନିଜର ସ୍ୱଳ୍ପ ସମୟ ମଧ୍ୟରେ ବହୁ କାର୍ଯ୍ୟର ତାଲିକା ଦେଖାଇ ତାଙ୍କଠାରୁ କ୍ଷମା ମାଗିନେଲେ ସେ।

ଯଶୋବନ୍ତଙ୍କ ନିର୍ଦ୍ଦେଶରେ ତପନ ତାଙ୍କୁ ସର୍ବପ୍ରଥମେ ତାଙ୍କର ଜଣେ ବ୍ୟବସାୟୀ ବନ୍ଧୁଙ୍କ ଘର ପାଖରେ ଛାଡ଼ିଦେଇ ଗଲେ।

ପାଖରେ ସୁମିତା ଏକା।

ଫେରି ଆସୁଥିବା ସମୟରେ ତାଙ୍କୁ ଆଚ୍ଛନ୍ନ କରୁଥିଲା ସ୍ମୃତିର ଏକ ମଧୁର ସିମ୍ଫୋନୀ।

"ସୁମିତା !"

ସୁମିତା ମୁହଁ ଫେରାଇ ଚାହିଁ କହିଲା, "ଶୁଣିଥିଲି କ୍ୱାଟର୍ସଟା ତୁମର ଗୋଟିଏ ହ୍ରଦ ପାଖରେ।"

ସେଇ ଅବଶ "ହଁ।"

"କ୍ୱାଟର୍ସ ସଂଲଗ୍ନ ତୁମ ଅଧ ଏକର ବିସ୍ତୃତ ବଗିଚାର ସୌନ୍ଦର୍ଯ୍ୟ ବିଷୟ ମୁଁ ଖୁବ୍ ଶୁଣିଛି ତପନ, ସେଇ ସବୁ ଲୋଭ ମତେ ଟାଣି ଆଣିଛି ଏତେ ଦୂର।"

ଆରଥର ଯଶୋବନ୍ତ ଆସିଲାବେଳେ କହୁଥିଲା, "ତୁମେ କୁଆଡ଼େ ଥରେ

ଏ ପାଖକୁ ଆସିଲେ ଆଉ ଯିବାପାଇଁ ଚାହିଁବ ନାହିଁ।''

''ସେଇ ଜନାକୀର୍ଣ୍ଣ ଶିଳ୍ପ ନଗରୀରେ ରହି ମୁଁ ଯେମିତି ଅଣନିଃଶ୍ୱାସୀ ହୋଇ ପଡୁଛି, ତପନ।''

''କେବେ ମନେପଡ଼େ ତୁମର ସେ ଦିନ ସବୁ? ଆଉ ମୋ କଥା?''

''ତପନ, ଅନେକ ଦିନ ବିତିଛି। ଏବେ କେବଳ ତୁମ କଥା ମନେ ରଖିବା ପ୍ରଶ୍ନ ଉଠୁଛି କୋଉଠି? ଆଚ୍ଛା, ଘରଟା କ'ଣ ଷ୍ଟେସନ ଠାରୁ ବହୁତ ଦୂର?''

ସୁମିତାର କଥାର ଗତି ବଦଳାଇବା ତପନଙ୍କ ଆଖିରେ ଧରା ପଡ଼ିଗଲା। ସେ କ'ଣ ଭାବି ଜୋରରେ ହସି ଉଠିଲେ।

''ହସିଲ ଯେ?''

''ଦେଖୁଛି, ତୁମେ ମୋତେ ଖୁବ୍ ଭୁଲାଇବାକୁ ଚେଷ୍ଟା କରୁଛ।''

''ରଞ୍ଜିତାଙ୍କ ଭାଗ୍ୟ। ତୁମ ଭଳି ସୁରୁଚିସମ୍ପନ୍ନ ସ୍ୱାମୀ ପାଇଛନ୍ତି।''

''ଆଉ ତୁମେ? ତୁମେ ତ ଦିନେ ରଞ୍ଜିତା ବଦଳରେ ମୋ ପାଖକୁ ଆସି ଥାଆନ୍ତ। ମୁଁ ଯାହା ପାଇ ପାରିନାହିଁ ତୁମେ ହୁଏତ ତା'ର ବହୁଗୁଣ ଅଯାଚିତ ଭାବରେ ମୋତେ ଦେଇ ପାରି ଥାଆନ୍ତ।''

ସୁମିତାର ଇଚ୍ଛା ହେଉଥିଲା, ଶିଷ୍ଟାଚାରର ବିରୁଦ୍ଧାଚରଣ କରୁଥିବା ତପନଙ୍କୁ ବେଶ୍ ଦୁଇପଦ ଶୁଣାଇ ଦେବାକୁ। କିନ୍ତୁ ସବୁ କହିବାକୁ ମନରେ ଉଚ୍ଚାରଣ କରୁଥିଲେ ମଧ୍ୟ ସେ କିଛି ହିଁ କହି ପାରି ନ ଥିଲା। ବରଂ ସେ ଉତ୍ତର ଦେଲା-

''ଥାଉ, ତପନ।''

''ବହୁଦିନ ପରେ ତୁମକୁ ଦେଖି ମୋର କ'ଣ ମନେ ହେଉଛି ଜାଣ? ତୁମେ ଯେପରି ବହୁତ ବଦଳି ଯାଇଛ, ଖୁବ୍ ନିର୍ଲିପ୍ତ ଓ ଉଦାସୀନ ହୋଇ ଯାଇଛ। ତୁମର ସେଇ ଉଜ୍ଜଳ ଆଖି ଦୁଇଟିରେ ସତେକି ଉଦାସୀନତା ବସା ବାନ୍ଧିଛି।''

ସୁମିତା କିଛି ଉତ୍ତର ନ ଦେଇ ବାହାରକୁ ଚାହିଁ ନୂତନ ସହରଟିର ଶାନ୍ତ ସୌନ୍ଦର୍ଯ୍ୟରେ ମନୋନିବେଶ କଲା। ତପନ ପୁଣି କହିଲେ-

''ଅନେକ ଖବର, ଅନେକ କଥା। ଦରଦୀ ବନ୍ଧୁଟିଏ ପାଖରେ ପାଇଲେ

ପ୍ରଗଲ୍ଭ ହେବାକୁ ଇଚ୍ଛା ହେଲା ପରି ମୁଁ ବହୁତ ଗଳ୍ପ କରୁଛି, ନୁହେଁ ?''

ଗାଡ଼ିର ଗତି କମିଲା । ସାମନାର ଫାଟକ ଭିତରେ ଗାଡ଼ି ପ୍ରବେଶ କରାଇ ସ୍ପିଡ୍ ବଢ଼ାଇ ଦେଲେ ତପନ ।

''ଏଇଟା ବୋଧହୁଏ ସେଇ ପୂର୍ବ ବର୍ଣ୍ଣିତ ବଗିଚା ?''

''ହଁ, ଭାବିଲି ପ୍ରଥମେ ତୁମକୁ ଘରକୁ ଡ଼ାକିନେଇ ବୋର୍ କରିବା ଅପେକ୍ଷା ବରଂ ଏଇ ହ୍ରଦ କୂଳରେ କିଛି ସମୟ ବସି କଟାଇଲେ କେମିତି ହୁଅନ୍ତା ?''

''ଖୁବ୍ ଭଲ, ତପନ । କିନ୍ତୁ ମୋର ଅନୁରୋଧ, ରଞ୍ଜିତା ଯଦି ଆସି ଯାଇଥିବେ, ତାଙ୍କୁ ଡ଼କାଇଲେ ବି ଭଲ ହୁଅନ୍ତା ।''

ଗାଡ଼ିଟା ଲକ୍ କରି ଆସୁ ଆସୁ ହସରେ ଫାଟି ପଡ଼ିଲେ ତପନ ।

''ରଞ୍ଜିତା ଆସିବ ଏଠିକି ? ତା'ର ଇଙ୍ଗାକ, କ୍ଲବ, ପାର୍ଟି ପରେ ପୁଣି ସମୟ ବଳିଲେ ତ ? ତା'ଛଡ଼ା ଏମିତି ଜଙ୍ଗଲିଆ ସ୍ଥାନକୁ ଆସିବାକୁ ସେ ଆଦୌ ଭଲ ପାଏନା ।''

କିଛି ସମୟ ଦୁହେଁ ନୀରବ ରହିବା ପରେ ହଠାତ୍ କହି ପକାଇଲା ସୁମିତା-

''ତପନ, ସତ କହିବ ? କେବେ ତମେ ଏଇ ସମୟରେ ଏଠିକି ଆସିଛ ? ଦେଖିଛ କେବେ ହ୍ରଦ ଜଳରେ ସୂର୍ଯ୍ୟାସ୍ତର ପ୍ରତିବିମ୍ବ ?''

''ହଁ, ସୁମିତା । ସୁନ୍ଦର, ଖୁବ୍ ସୁନ୍ଦର । ଯିବ ?''

''କୁଆଡ଼େ ?''

''ହେଇତ, ସେ ଛୋଟ ବୋଟ୍‌ଟା ନେଇ ହ୍ରଦରେ ବୁଲିବା ।''

''କିନ୍ତୁ ?''

''କିନ୍ତୁ କ'ଣ ? ତୁମେ ମୋର ଅତିଥି । ବହୁଦିନ ପରେ ଆସିଛ ।''

ସୁମିତା ଅନ୍ୟମନସ୍କ ଭାବରେ କହୁଥିଲା, ''ଦେଖୁଛ, ସେ ପାଖରେ ଉଠିବ ଚନ୍ଦ୍ର, ଠିକ୍ ସୂର୍ଯ୍ୟାସ୍ତର ପରେ ପରେ । ତିଥିଟା ବୋଧହୁଏ ପୂର୍ଣ୍ଣିମା ?''

''ରଞ୍ଜିତା କିଛି ବୁଝେନା ଏ ସବୁ । ବହୁଦିନ ଧରି ମୋର ମନଟା ନିର୍ଜୀବ ହୋଇ ପଡ଼ି ରହିଛି ତା' ପାଖରେ ।''

ଅକସ୍ମାତ ସୁମିତାର କାନ୍ଧ ହଲାଇ ଦେଲେ ତପନ ।

''ସୁମିତା, କାହିଁକି ଆଉ ନିଜକୁ ଠକିବା କୁହତ ? ଆଜି ଖାଲି ମନେ

ହେଉଛି ଦଶ ବର୍ଷର ସଞ୍ଚିତ ତୁମ ମୋ ଅନ୍ତର୍ଦହନର ଲିପି ଶୁଣି ଶୁଣି ସମୟ କଟାଇ ଦିଅନ୍ତେ।''

''କିନ୍ତୁ ଯଶୋବନ୍ତ ଆସି ଖୋଜି ପାରନ୍ତି। ରଞ୍ଜିତା ମଧ୍ୟ ଅପେକ୍ଷା କରିଥିବେ ଆସି।''

''ମାତ୍ର କେତେ ଘଣ୍ଟା ପାଇଁ ଆମେ ସବୁ ଭୁଲି ପାରନ୍ତେ ନାହିଁ? ତୁମେ ଭାବି ନିଅ ଯଶୋବନ୍ତ ହୁଏତ ବ୍ୟବସାୟୀ ବନ୍ଧୁଙ୍କ ନିକଟରୁ ରାତି ଦଶଟା ପୂର୍ବରୁ ଫେରି ପାରୁନି।''

ତପନଙ୍କ ଦୁଇ ହାତ ମଧ୍ୟରେ ବନ୍ଦୀ ହୋଇଥିବା ନିଜର ହାତ ଦୁଇଟିକୁ ଛଡ଼ାଇ ଆଣିବାର ଚେଷ୍ଟା ନ କରି ମୂର୍ତ୍ତିଟିଏ ଭଳି ଚାହିଁ ରହିଥିଲା ସୁମିତା। ମୃଦୁ ପବନର ଢ଼େଉଢ଼େଉକା ସ୍ପର୍ଶ ଦେହକୁ ଛୁଇଁ ଛୁଇଁ ଯାଉଥିଲା।

''ସୁମିତା, ତୁମେ ଯାହା ଚାହଁ ଯଶୋବନ୍ତ ଚାହେଁନି। ଆଉ ମୁଁ? ରଞ୍ଜିତାର ମନ ମୋ' ମନ ଠାରୁ ସମ୍ପୂର୍ଣ୍ଣ ବିପରୀତ।''

''ତପନ, ଏମିତ କାହିଁକି ହେଲା? ମୋ ପାଇଁ ତୁମ ବାପାଙ୍କ ମତାମତର ବିରୋଧ କରିବାକୁ ତୁମେ ଡ଼ରିଗଲ କାହିଁକି? କୁହନା, ଚୁପ୍ ରହି କ'ଣ ଭାବୁଛ?'' ସୁମିତାର କଣ୍ଠ ବାଷ୍ପାଚ୍ଛନ୍ନ ହେଲା।

ତପନ ହଠାତ୍ କହି ପକାଇଲେ, ''ଜୀବନରେ ବହୁ କଷ୍ଟଲବ୍ଧ ଏଇ ମୁହୂର୍ତ୍ତଟିରେ ତୁମେ କ'ଣ ଭାବୁଛ ଆମେ ଖାଲି ଦୁଃଖ କରୁଥିବା?''

ଆକାଶରେ ଉଠି ଆସୁଥିବା ଚନ୍ଦ୍ର ପ୍ରତି ଥରେ ଦୃଷ୍ଟି ଦେଇ ସୁମିତାର ହାତ ଟାଣି ଦ୍ରୁତ ଗତିରେ କୂଳକୁ ଆଗେଇଲେ ତପନ।

ତା'ପରେ-

ଛୋଟ ବୋଟ୍‌ଟି ଖୋଲି ସୁମିତାକୁ ଟାଣିନେଇ ବସାଇ ଦେଲେ ସେ।

ଧୀରେ ଧୀରେ ବୋଟିଂ କରୁଛନ୍ତି ତପନ। ସୁମିତା ସମ୍ମୋହିତା। ଦୁହେଁ ଯେମିତି ଦୃଢ଼ପ୍ରତିଜ୍ଞ, ପରିସ୍ଥିତି ଯାହା ହେଉ ପଛକେ ଅନ୍ତତଃ ଦୁଇ ତିନି ଘଣ୍ଟା ଭିତରେ ଫେରିଯିବା ପାଇଁ କେହି ଚାହିଁବେ ନାହିଁ। ସୁମିତା ଶିଳ୍ପପତି ଯଶୋବନ୍ତଙ୍କ ପତ୍ନୀ, ତପନ ସ୍ଥାନୀୟ ଜିଲ୍ଲା ମାଜିଷ୍ଟ୍ରେଟ୍। ବୟସ, ସମ୍ମାନ ଦୃଷ୍ଟିରୁ କ'ଣ କରିବା ଉଚିତ୍ ବା ନୁହେଁ, ଏ ଚିନ୍ତାଠାରୁ ବହୁ ଦୂରରେ ଥିଲେ ସେମାନେ।

ଦୁହେଁ ହସୁଥିଲେ ଖୁବ୍। ଗହନ ସ୍ୱପ୍ନ ସମୁଦ୍ରର ସାତତାଳ ପାଣି ତଳେ

ଗଚ୍ଛିତ ଥିବା ଶାନ୍ତିର ପରୁଆ ଦୁହିଁଙ୍କ ହାତ ମୁଠାରେ। ସମୀରଣ, ଜହ୍ନର ମୂର୍ଚ୍ଛନା, ନିର୍ଜନତାର ସୁମଧୁର ସ୍ୱର ଦୁହିଁଙ୍କୁ ମୁଗ୍ଧ କରିଥିଲା। ଜ୍ୟୋସ୍ନାଧୌତ ସୁନା ଝିଲିମିଲି ହ୍ରଦ ଜଳରେ ବୋଟ୍ ଚଳାଇ ଗତାୟୁ ସ୍ମୃତିମଧୁର ମୁହୂର୍ତ୍ତମାନଙ୍କୁ ଜୀବନ୍ତ କରିବାକୁ ଚେଷ୍ଟା କରୁଥିଲେ ସେମାନେ।

ବହୁ ସମୟ ଆଲୋଚନା ଓ କାଗଜପତ୍ର ଦେଖାରେ କଟିଯାଇ ସମୟ ଜଣା ପଡୁ ନ ଥିଲା ଯଶୋବନ୍ତଙ୍କୁ। ହଠାତ୍ ଘଣ୍ଟା ଦେଖି ସେ ଉଠି ଠିଆ ହେଲେ ଯିବାକୁ। କୌଣସି ପ୍ରକାର ବ୍ୟବସାୟୀ ବନ୍ଧୁଙ୍କ ଅନୁରୋଧ ରକ୍ଷା କରି ସେଠାରେ ରାତ୍ରିଭୋଜନ ଶେଷ କରିବା ପାଇଁ ସେ ସମ୍ମତ ହୋଇ ପାରିଲେ ନାହିଁ। ବରଂ ତାଙ୍କୁ ଶୀଘ୍ର ତପନଙ୍କ କ୍ୱାଟର୍ସରେ ପହଞ୍ଚାଇ ଦେବା ପାଇଁ ସେ ଓଲଟା ଅନୁରୋଧ କରି ବସିଲେ।

ହଠାତ୍ କିଛି ବୁଝିପାରୁ ନ ଥିଲେ ଯଶୋବନ୍ତ। ଘରଟା ଏକଦମ୍ ନିଷ୍ଟୁପ୍। କେହି ଯେମିତି କେଉଁଠି ନାହାନ୍ତି, କିମ୍ବା ଶୋଇ ସାରିଲେଣି! ଯାହାହେଉ ବୈଠକ ଘରେ ଚୁପ୍‌ଚାପ୍ ବସି ରହିଲେ ସେ।

ମାତ୍ର କିଛି ସମୟ ପୂର୍ବରୁ ଫେରି ଶାଢ଼ୀ ବଦଳାଉ ଥିଲେ ରଞ୍ଜିତା। ଖବର ପାଇ ତରତର ହୋଇ ବୈଠକ ଘରକୁ ପଶି ଆସି ସ୍ମିତ ହାସ୍ୟରେ ସମ୍ଭାଷଣ ଜଣାଇଲେ ସେ।

''ଏକା ଯେ! ସୁମିତା କ'ଣ ଆସିଲେ ନାହିଁ?''

''କେତେକ ଜରୁରୀ କାମ ନେଇ ଷ୍ଟେସନରୁ ସିଧା ମତେ ମୋର ଜଣେ ବନ୍ଧୁଙ୍କ ଘରକୁ ହିଁ ଯିବାକୁ ହେଲା। ଏତେ ସମୟ ଧରି ମୁଁ ସେଇଠି ଅଟକି ଯାଇ ଥିଲି। ତପନ ତ ଆମକୁ ଷ୍ଟେସନରୁ ଆଣିଲା।''

''ତେବେ ସୁମିତା?''

କିଛି ସମୟ ପରେ ଦୁହେଁ ଭାବି ସ୍ଥିର କଲେ ଯେ ସୁମିତା ହୁଏତ ଘରେ ରଞ୍ଜିତା ଅନୁପସ୍ଥିତ ଜାଣି ପୂର୍ବ ପରିଚିତା କେଉଁ ବାନ୍ଧବୀଙ୍କ ଘରେ ସମୟ କଟାଉଛନ୍ତି। ଆଉ ତପନ ନିଶ୍ଚୟ କ୍ଲବରେ।

କଥା କହିବାକୁ ଆରମ୍ଭ କରି ଟଙ୍କାପଇସା, ବ୍ୟବସାୟରେ ଲାଭକ୍ଷତି ଆଦି ବହୁ ଆଲୋଚନା କରୁଥିଲେ ରଞ୍ଜିତା। ଆଉ ଯଶୋବନ୍ତ ମଧ୍ୟ ସମୟ

କଟାଇବା ପାଇଁ ତାଙ୍କ ସହ ଖୁସି ଗପ କରି ବେଶ୍ ପ୍ରଫୁଲ୍ଲ ମନେ ହେଉଥିଲେ ।

"ଆପଣଙ୍କ ଝିଅ ବଡ଼ ନା ?"

"ହଁ ସେ ବଡ଼ । ତା'ପରେ ମୋର ଦୁଇ ପୁଅ । ଜାଣିଥିବେ ।"

"ଆପଣ ସୁଖୀ ।"

"ଆପଣଙ୍କର ତ ମାତ୍ର ଦୁଇଟି ଝିଅ ।"

"ଜାଣନ୍ତି, ଆପଣଙ୍କ ବନ୍ଧୁଙ୍କର କିନ୍ତୁ ଘର ବିଷୟରେ କିଛି ଚିନ୍ତା ନ ଥାଏ । ଦୁଇ ଝିଅଙ୍କର ପାଠପଢ଼ା, ବିବାହ ପାଇଁ ଏବେଠାରୁ ବ୍ୟାଙ୍କ୍‌ରେ କିଛି ପଇସା ରଖିବା କଥା । ଏ କଥା ସବୁ ଶୁଣିଲେ ସେ ଭାରି ଚିଡ଼ି ଯାଆନ୍ତି । ଆପଣଙ୍କର ବା କ'ଣ ଚିନ୍ତା ? ଫ୍ୟାକ୍‌ଟେରୀ ତ ଚାଲିଛି ।"

"ଭୁଲ୍ ବୁଝୁଛନ୍ତି, ରଞ୍ଜିତା ଦେବୀ । ଥରେ କ୍ଷତି ହେଲେ ଆମ ଅବସ୍ଥା ସାଂଘାତିକ । ତା'ଛଡ଼ା ଲାଭଟା ମିଳିବା ମାତ୍ରକେ ପୁଣି କେମିତି ହେଲେ ବ୍ୟବସାୟରେ ହିଁ ଲାଗିଯାଏ ।"

ଟିକିଏ ଗମ୍ଭୀର ରହି ଯଶୋବନ୍ତ ପୁଣି କହିଲେ, "ହଁ, ତଥାପି ସଞ୍ଚୟ ଦରକାର ନିଶ୍ଚୟ, କିନ୍ତୁ ସୁମିତା ଠାରୁ ଏଇ କଥା ଶୁଣିବାକୁ ଆଶା କରିବା ବୃଥା ।"

ରଞ୍ଜିତା ସଲ୍ଲଜ ହସି ତଳକୁ ଚାହିଁ ମୁହଁ ପୋତିଲେ । ଏକ ମୁଗ୍ଧ ଦୃଷ୍ଟି ନେଇ ତାଙ୍କୁ ଚାହିଁ ରହିଥିଲେ ଯଶୋବନ୍ତ ।

ସେ ପାଖରୁ ଏକା ସଙ୍ଗେ ହସି ହସି ପଶି ଆସିଲେ ତପନ ଓ ସୁମିତା ।

"ବାଃ କୁଆଡ଼େ ଚାଲିଗଲ ? ଯଶୋବନ୍ତ ନ ଖାଇ ତୁମକୁ ଅପେକ୍ଷା କରିଛନ୍ତି ।"

"ପ୍ଲିଜ୍ ଏକ୍‌ସକ୍ୟୁଜ୍ ମି, ଯଶୋବନ୍ତ । ଯାଅ ତ ରଞ୍ଜୁ, ଶୀଘ୍ର ଖାଇବା ବ୍ୟବସ୍ଥା କର । ଭୋକ ବି ଲାଗିଲାଣି । ବସନା ସୁମିତା ।"

ତପନ ଭାରି ଫୂର୍ତ୍ତି ମନେ ହେଉଥିଲେ । କେତେବେଳେ ଗୁଣୁଗୁଣୁ ଗୀତ ଗାଉଥିଲେ ତ ପୁଣି ଉଠିଯାଇ ବୈଠକ ଘରେ ସଜା ହୋଇଥିବା ମୂର୍ତ୍ତି କେତେଟା ପୋଛାପୋଛି କରି ରଖୁଥିଲେ ।

ରଞ୍ଜିତାଙ୍କୁ ସାହାଯ୍ୟ କରିବାକୁ ହଠାତ୍ ଛନ୍ଦାୟିତ ଗତିରେ ଖାଇବା ଘର ଆଡ଼କୁ ଚାଲି ଯାଉଥିଲା ସୁମିତା ।

ସିଗାରେଟ୍ ଡ଼ଷ୍ଟ ସବୁ ଆସ୍‌ଷ୍ଟ୍ରେରେ ଝାଡୁଥିବା ବେଳେ ସେଇ ଆଡ଼େ ଏକ ଗମ୍ଭୀର ଭାବ ନେଇ ଚାହିଁ ରହିଲେ ଯଶୋବନ୍ତ।

"ତମମାନଙ୍କ ପ୍ରତୀକ୍ଷାରେ ବୋର୍ ହେବା ଅପେକ୍ଷା ମୁଁ ଓ ସୁମିତା ଯାଇ ହ୍ରଦ କୂଳରେ ବସିଥିଲୁ। ହିଂସା ଲାଗୁଛି କି ବନ୍ଧୁ?"

ତପନଙ୍କ ବୟାନ ଶେଷରେ ଦୁଇ ବନ୍ଧୁଙ୍କ ମିଳିତ ହାସ୍ୟରୋଳ ରଞ୍ଜିତାଙ୍କ ଡ଼ାକରେ ହିଁ କେବଳ ବନ୍ଦ ହେଲା।

ସେଦିନ ରାତ୍ରିରେ ଖାଇବା ପରେ ସେମାନେ ବସି ବସି ଅନେକ ବେଳ ଗପସପ କରି ଡ଼େରିରେ ଶୋଇବାକୁ ଗଲେ।

ଯଶୋବନ୍ତ କ୍ଲାନ୍ତ, ସୁମିତା ବି। ଦୁଇଟି ଶୟନକକ୍ଷ ସଂଲଗ୍ନ ଏକମାତ୍ର ସ୍ନାନାଗାର। ପ୍ରତିଦିନର ଅଭ୍ୟାସବଶତଃ ଶୋଇବା ପୂର୍ବରୁ ଟିକିଏ ଧୂଆଧୋଇ ହେବାପାଇଁ ସେ ଘରେ ପ୍ରବେଶ କରି ଆକସ୍ମିକ ଭାବରେ ସ୍ତବ୍ଧ ହେଲା ସୁମିତା।

ତପନଙ୍କ ଶୟନକକ୍ଷରୁ ଏ ଶବ୍ଦ ଆସୁଥିଲା। ରଞ୍ଜିତାଙ୍କ ଚାପା କ୍ରନ୍ଦନ।

କିନ୍ତୁ କ'ଣ ପାଇଁ? ସେ କ'ଣ ସୁମିତା ଓ ତପନଙ୍କୁ ସନ୍ଦେହ କରିଛନ୍ତି? ତପନ ହୁଏତ ବିବାହ ପୂର୍ବର ସମସ୍ତ ସମ୍ପର୍କ ବିନା ଦ୍ୱିଧାରେ ରଞ୍ଜିତାଙ୍କୁ କହିଥାଇ ପାରନ୍ତି। ତେବେ ରଞ୍ଜିତା ଅବୁଝା ହେଇ ଉଠୁଛନ୍ତି ଓ ତପନ ଚୁପ୍ ଚୁପ୍ କିଛି କହିବାକୁ ଚେଷ୍ଟା କରୁଛନ୍ତି।

ଏତେ ଧୂଆଧୋଇ ସତ୍ତ୍ୱେ ଆରାମରେ ଶୋଇ ପାରିଲାନି ସୁମିତା। ଆଖିରୁ ତନ୍ଦ୍ରାର ପ୍ରଲେପ ପୋଛି ହେଇଗଲାଣି। ବିଛଣାରେ ପଡ଼ି ଅସ୍ଥିର ଲାଗୁଛି। ବ୍ୟସ୍ତ ହୋଇ ଉଠି ବସିଲା ସେ। ନା, କିଛି ଭଲ ଲାଗୁ ନାହିଁ।

ତପନକୁ ପାଇ ପାରୁନୁ ବୋଲି ତୁ କ'ଣ ସତରେ ଅସୁଖୀ? ସତ କହ। ନା, ତୁ ବଡ଼ ଚାଲାକ ଚତୁର ଝିଅ। ଧନପତି, ସୁପୁରୁଷ ଯଶୋବନ୍ତଙ୍କୁ ପାଇବା ପରେ ତା'ର ସନ୍ତାନମାନଙ୍କୁ କୋଳରେ ଧରି ତୁ ନିଜକୁ ବେଶ ଚଳାଇ ନେଇଛୁ ତ? ତେବେ ଏତେଦିନ ପରେ ତପନକୁ ଦେଖି ତୁ ନିଜକୁ ଭୁଲିଗଲୁ କାହିଁକି?

କାହିଁକି ନିଶାର୍ଦ୍ଧର ସୁସୁପ୍ତ ମୁହୂର୍ତ୍ତରେ ଅଧୀରା ହୋଇ କାନ୍ଦୁଛି ରଞ୍ଜିତା? ନିଜକୁ ଏଇ ପ୍ରଶ୍ନ ପଚାରି ଅସ୍ଥିର ହେଉଥିଲା ସୁମିତା।

ଅତିଥି କକ୍ଷର ଝରକା ଦେଇ ଉଜଳ ଚନ୍ଦ୍ରକିରଣ ଘର ସାରା ଆଲୋକିତ

କରୁଥିଲା । ଦେହ ଥରିଲା ଉତ୍ତେଜନାରେ । ପାଗଳୀଙ୍କ ପରି ଉଠିଯାଇ ଝରକା ପାଖରେ ଠିଆ ହେଲା ସୁମିତା ।

ଦୂରରୁ ଦେଖା ଯାଉଛି ସେଇ ହ୍ରଦ ଓ ତା'ର ଜ୍ୟୋତ୍ସ୍ନାଧୌତ ଜଳରାଶି ।

ଆଉ ଅଧିକ କ୍ଷଣ ଏ ଦୃଶ୍ୟ ସ୍ଥାୟୀ ହେଲା ନାହିଁ । ହଠାତ୍ କେମିତି କୁଆଡୁ ମାଡ଼ି ଆସିଲା ହୁ ହୁ ବତାସ । ସତେ ଯେମିତି କ୍ଷଣକରେ ସେ ସବୁକୁ ଚୂର୍ଣ୍ଣୀଭୂତ କରିଦେଲା । ସମସ୍ତ ଆକାଶରେ ଛାଇଗଲା ବହଳ ଅନ୍ଧାର । ସ୍ମୃତିର ଭାସମାନ ନୌକାମାନ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଲେ । ହିଃ ହିଃ କରି ହସି ଉଠିଲା ସୁମିତାର ପ୍ରେତ । ଭୟରେ ଆଖି ବନ୍ଦ କରି ଧଡ଼ାସ୍ କରି ଝରକାଟା ବନ୍ଦ କଲା ସୁମିତା । □ □ □

'ସାହିତ୍ୟସଂସଦ', ଆକାଶବାଣୀ, କଟକ
ଝଂକାର, ୧୯୭୩

# ଜୀବନର ଅନ୍ୟନାମ

''ତାଙ୍କୁ ଆପଣ ଜାଣିନାହାନ୍ତି, ଅଙ୍କଲ୍। ସେ ଭାରୀ ଜଞ୍ଜାଳି। ଖାଲି ବାନ୍ଧି ହୋଇ ଯାଇଛନ୍ତି।''

''କିରେ, ଜଞ୍ଜାଳ କାହାର ନାହିଁ?''

''ଅଙ୍କଲ, ତାଙ୍କୁ ବୁଝେଇ ଦିଅନ୍ତୁ। ଆମେ ତାଙ୍କ ପୁଅ ଝିଅ ବେଶ୍ ବଡ଼ ବଡ଼ ହୋଇଯାଇଛୁ। ଆମ ପାଇଁ ଚିନ୍ତା କରି ନିଜକୁ ଏତେ କଷ୍ଟ ଦେଉଛନ୍ତି କାହିଁକି? ଇଚ୍ଛା କଲେ ତାଙ୍କ ଲେଖାଲେଖି ମଧ୍ୟରେ ସେ ଆନନ୍ଦରେ ରହି ପାରିବେ।''

ମା' ଖୁବ୍ ହସୁଛନ୍ତି। କ'ଣ କହିବାକୁ ଯାଇ କହିପାରୁ ନାହାନ୍ତି।

ଏଇ ଗୋଟାଏ କଥା ସେ କେତେ ଶୁଣିବେ? ଚିନ୍ମୟ ଅଙ୍କଲ୍ ଆମ ପରିବାରର ବନ୍ଧୁ, ବିଶେଷ କରି ମା'ଙ୍କ ଲେଖକ ବନ୍ଧୁ।

ଆଲୋଚନାଟା ମା'ଙ୍କ ସମ୍ପର୍କରେ! ଚିନ୍ମୟ ଅଙ୍କଲ୍ ମା'ଙ୍କ ପକ୍ଷ ନେଉଛନ୍ତି।

''ମା' ବାପା ସାରା ଜୀବନ ପିଲାଙ୍କ କଥା ହିଁ ଭାବିବେ। ପିଲାଙ୍କୁ ଭୁଲିବା ଅର୍ଥ ନିଜକୁ ଭୁଲିଯିବା।''

''ଦେଖନ୍ତୁ, ଚିଠି ଦେବାରେ ଟିକିଏ ଡ଼େରି ହେଲା ତ ପରଦିନ ଫ୍ଲାଇଟ୍‌ରେ ମୋ ପାଖକୁ ଆସିବାକୁ ସେ ପ୍ରସ୍ତୁତ।''

ଦ୍ରୁତଗତିରେ ଧାଇଁଛି ଏକ୍ସପ୍ରେସ୍ ଟ୍ରେନ୍, ଠିକ୍ ସମୟ ଓ ଜୀବନ ସଙ୍ଗେ ତାଳ ଦେଇ। ଏ ସମୟ ମୋତେ କେଉଁଠି ଆଣି ଛାଡ଼ି ଦେଇଛି! ମୁଁ ଆଲୋକ

ଦାସ। ମୋ ଜୀବନର ଉଣେଇଶଟି ବସନ୍ତ ଅତିକ୍ରମ କରି ଆଗେଇ ଆସିଛି। ଏବେ ମୁଁ ବିଶ୍ୱବିଦ୍ୟାଳୟର ଛାତ୍ର। ମାତ୍ର କେତେଦିନର ଛୁଟି କଟାଇବା ପାଇଁ ଆସିଥିଲି ଘରକୁ। ଛୁଟି ସରିଛି। ଏଇ କେତେଘଣ୍ଟା ପୂର୍ବରୁ ମା' ବାପା, ବନ୍ଧୁମାନେ ମୋତେ ଛାଡ଼ିଦେବା ପାଇଁ ଷ୍ଟେସନ ଆସିଥିଲେ।

ବନ୍ଧୁମାନେ ମୋତେ ଘେରି ରହିଥିଲେ। ମୁଁ କ'ଣ କରୁଥିଲି, କ'ଣ ବା ଭାବୁଥିଲି ଠିକ୍ ମନେ ପକାଇ ପାରୁନି। ମା' କାହିଁକି ଚୁପ୍‌ଚାପ୍ ନୀରବରେ କ'ଣ ଭାବୁଥିଲେ।

''ଓଃ, କାଲିଠୁଁ ଡ୍ରାଏ ଲାଇଫ୍।'' ମା'ଙ୍କ ହତାଶାର ସ୍ୱର।

''କାହିଁକି ?'' ଆଶ୍ଚର୍ଯ୍ୟ ହେଲାପରି ପଚାରିଲେ ବାପା।

ମା' ତାଙ୍କୁ ସେମିତି ଚାହିଁ ରହିଥିଲେ ବି ଅନ୍ୟ କିଛି ଚିନ୍ତା କରୁଥିଲେ।

ସେମାନେ ମୋତେ ଖାଇବା ଟେବୁଲ୍‌ରେ ଅପେକ୍ଷା କରିଥିଲେ। ରାତ୍ରି ପୋଷାକ ଉପରେ ଗାଉନ୍‌ର ଫାଶଟା ବାନ୍ଧିନେଇ ଖୁବ୍ ଶୀଘ୍ର ଖାଇବା ଟେବୁଲକୁ ଚାଲି ଆସିଥିଲି ମୁଁ।

ଅନେକ ବହି, ଖାତା ସୁଟକେଶରେ ଭର୍ତ୍ତିକରି ଆଣିଥିଲି, କିଛି ବି ପଢ଼ି ପାରିଲିନି। ମା'ଙ୍କ କହିବା ପରେ ବାପା ସେଇକଥା ପଚାରି ଦେଇପାରନ୍ତି ବୋଲି ଆଶଙ୍କା କରୁଥିଲି। ତା' ସେ ପଚାରିଲେ ନାହିଁ। ମା ବି ପଚାରି ପାରିଥାଆନ୍ତେ।

ସେ ମୋ ପ୍ଲେଟ୍‌ରେ ତନ୍ଦୁର ଚିକେନ କେତେଖଣ୍ଡ ଦେବାବେଳେ ବାପା କହିଲେ, ''ତାକୁ ଟିକେ ଭଲକରି ଦିଅ।''

ମୁଁ ଦୋଷ କଲାଭଳି ନୀରବରେ ବସି ଖାଉଥିଲି, ଭାବୁଥିଲି ମୁଁ ଆସି ପହଞ୍ଚିବା ଦିନ କଥା। ହଁ, ଚାଲିଗଲା ଦିନ ସବୁକୁ ଧରି ରଖି ହୁଏନାହିଁ।

''..ଆଲୋକକୁ ଉଠେଇ ଦିଅ। ବ୍ରେକ୍‌ଫାଷ୍ଟ ଡ଼େରି ହେଉଛି।''

''ଆଜି ସେ ଶୋଇଥାଉ ଟିକେ, ଦୁଇଦିନ ଟ୍ରେନ୍‌ରେ ବସି କ୍ଲାନ୍ତ ହୋଇ ପଡ଼ିଛି।''

ମା' ବାପାଙ୍କ କଥାବାର୍ତ୍ତା କାନରେ ପଡୁଛି। ମୁଁ ଯେ ଆଦୌ କ୍ଲାନ୍ତ ନୁହେଁ, କିନ୍ତୁ ବିଛଣାରୁ ଉଠିବାକୁ ଇଚ୍ଛା ନାହିଁ।

ବାପା ଖାଇଦେଇ ଅଫିସ୍ ଚାଲିଗଲେଣି। ମା' ଖୁବ୍ ସକାଳେ ଗାଧାନ୍ତି। ଅଥଚ ବ୍ରେକ୍‌ଫାଷ୍ଟ ନ ଖାଇ ମୋତେ ଅପେକ୍ଷା କରିଛନ୍ତି। ଦଶଟା ବାଜିଗଲାଣି।

ମୁଁ ବ୍ୟସ୍ତ ହୋଇ ପଡ଼ିଲି। ଅନେକ ଡ଼େରି ହୋଇଗଲା, କିଶୋର ଅପେକ୍ଷା କରିଥିବ।

''ମା, ଟିକେ ଶୀଘ୍ର ଦିଅ। ମୁଁ ଯିବି।''

''ଏବେ ଖରାରେ କୁଆଡ଼େ ଯିବୁ ?''

''ମୋ ସାଙ୍ଗମାନଙ୍କ ଘରେ ସେମାନଙ୍କ ଚିଠି ଦେବାର ଅଛି। ଦେଖ, ତୁମ ପାଖକୁ ମୁଁ ପଠାଇଥିବା ଜିନିଷ, ଚିଠି ଇତ୍ୟାଦି ସେମାନେ ତ ପୁଣି ନେଇ ଆସନ୍ତି।''

''ଠିକ୍ ଅଛି ଯା, ଜଲଦି ଫେରି ଆସିବୁ।''

''ମା, ଦୁଇଟା ବାଜିଯିବ। ବାପା ଆଉ ତୁମେ ମୋତେ ଅପେକ୍ଷା କରିବନି।'' ମା'ଙ୍କ କାନ୍ଧରେ ମୁଁ ମୁଣ୍ଡ ରଖି ଟିକେ ଗେହ୍ଲା ହେଲି।

ସେ କିନ୍ତୁ ନୀରବ।

''ମା, କିଛି କହୁନ ଯେ ?''

''କ'ଣ କହିବି, ତୋର ତ କାମ ଅଛି ଯିବୁ।''

ବାହାରକୁ ଚାଲି ଆସିଲେ ଖୁବ୍ ଡ଼େରି ହୋଇଯାଏ। ମୁଁ ଭାବେ ଆଜି ଦିନକ, କାଲିଠୁଁ ଆଉ ଏସବୁ ନୁହଁ। କିଛି ଚିନ୍ତା କରି ହୁଏନା, ମୋର ସ୍ଥିରତା ରହେନା। ମୋତେ ସେମାନେ ଯାହା କହନ୍ତି ରାଜି ହୋଇଯାଏ।

ରବିବାର- ଅନେକ ବିଳମ୍ବରେ ବିଛଣାରୁ ଉଠି ଶୀଘ୍ର ପ୍ରସ୍ତୁତ ହେଲି ମର୍ଣ୍ଣିଂ ସୋ ପାଇଁ। ଇଂଲିସ୍ ପିକ୍‌ଚର୍ ଚାଲିଛି। ଯା' ପରେ ବିନୟ ଡ଼ାକିଛି ତା' ଘରକୁ। ଲଞ୍ଚର ନିମନ୍ତ୍ରଣ। ନୂଆ କ୍ୟାସେଟ୍ ଆଉ ରେକର୍ଡ଼ କିଛି ଶୁଣେଇବ। ପୁଣି ଫିଲ୍ମ ପ୍ରୋଗ୍ରାମ, ସନ୍ଧ୍ୟା ସାଢ଼େ ପାଞ୍ଚଟା। ଯା ପରେ ଖଟିରେ ଆଡ଼୍‌ଡ଼ା।

''ଖଟି ! ସେ ପୁଣି କ'ଣ ?''

ମୁଁ ହସିପକେଇଲି ମା'ଙ୍କ ଆଶ୍ଚର୍ଯ୍ୟ ଭାବ ଦେଖି।

''ତୁମେ ଦେଖିନ, ପୋଲ ଉପରେ ବସି ଆମ ସାଙ୍ଗ ସବୁ ଆଡ଼୍‌ଡ଼ା ଦିଅନ୍ତି।''

''ତୁ ବି ସେଇ ଦଳକୁ ଯାଉ !''

''ମା, ସେମିତି କୁହନି। ସେମାନେ ଭଲ ପିଲା। ଏମିତି ଏକାଠି ହୋଇ ଟିକେ ଗପ କରୁ।''

ମା' କିଛି କହିଲେନି ଯା ପରେ। କିନ୍ତୁ ପ୍ରତି ସନ୍ଧ୍ୟାରେ ସୁବିଧା ନ ହେଲେ ରାତି ଆଠଟା, ସାଢ଼େ ଆଠଟା ବେଳେ ଅଧଘଣ୍ଟାକ ପାଇଁ ଆମେ ନିଶ୍ଚୟ ଚାଲି ଯାଉଥିଲୁ ସେଇ ନିର୍ଦ୍ଦିଷ୍ଟ ସ୍ଥାନକୁ।

ସମୟ ଖୁବ୍ ଯନ୍ତ୍ରଣା ଦିଏ। ସେ କାହାକୁ ଖାତିର କରେନା। ଯେଉଁ ଷ୍ଟେସନରେ ମାତ୍ର କିଛିଦିନ ତଳେ ମୁଁ ଗାଡ଼ିରୁ ଓହ୍ଲାଇ ଖୁସିରେ ଧାଇଁ ଯାଇଥିଲି ଘରକୁ, ଠିକ୍ ସେଇଠି ଆଣି ଖୁବ୍ ଶୀଘ୍ର ସେ ମୋତେ ପହଞ୍ଚେଇ ଦେଲା। ମୋର କର୍ତ୍ତବ୍ୟସଚେତନ ମନ ଏତିକିବେଳେ ମୋତେ ଛୁଇଁ ଦେଇଗଲା। ମୋ ସୁସଜ୍ଜିତ କୋଠରୀରେ ମୁଁ ସଜାଇ ରଖିଥିବା ଜିନିଷ ସବୁ ଆଉଥରେ ମୋ ସୁଟ୍‌କେଶ୍, କିଟ୍‌ରେ ପ୍ୟାକ୍ କରି ମୁଁ ଫେରିବା ଯାତ୍ରା ଆରମ୍ଭ କରିଦେଲି।

''ଏଇ କେତେ ବର୍ଷ ତୋତେ ସାଧନା କରିବାକୁ ହେବ। ସାଧୁ ସନ୍ୟାସୀଙ୍କୁ ଦେଖିଛୁ। ଈଶ୍ୱରପ୍ରାପ୍ତି ନିମିତ୍ତ ସେମାନେ ଏକନିଷ୍ଠ ତପସ୍ୟା କରନ୍ତି। ତୁ ଛାତ୍ର, ଅଧ୍ୟୟନ ହିଁ ତୋର ତପସ୍ୟା....

ହଁ, ତୁ ଯେଉଁ ସହରରେ ଅଛୁ ସେଠି ଆକର୍ଷଣର ଅଭାବ ନାହିଁ। କିନ୍ତୁ ନିଜ ଉପରେ ଯଦି ନିଜର ଅଧିକାର ନ ରହିବ, ମୂଳ ଲକ୍ଷ୍ୟରୁ ଦୂରେଇ ଯିବା ସ୍ୱାଭାବିକ।''

''ଓଃ ମା, ତୁମେ ଖାଲି ପ୍ରିଚ୍ କରୁଛ।''

ଚିଠିର ଏଇ କେତେଧାଡ଼ି ପଢ଼ି ହୋଇଯାଏ। ଏକା ନିଃଶ୍ୱାସରେ ପଢ଼ିନେଇ ଚିଠିଟା ରଖିଦିଏ ସେ। ମାତ୍ର ଏଭଳି କିଛି ଶୁଣିବା ବୋର୍।

''ପ୍ରତିଦିନ କଥା ଅଲଗା, ମାତ୍ର ହେଇ ସେ ସପ୍ତାହରେ ଫିଲ୍ମ ଫେଷ୍ଟିଭାଲ୍ ଚାଲିଲା, ୟୁନିଭରସିଟିରେ ଗଜଲ ନାଇଟ୍‌ରେ ଜଗଜିତ୍, ଚିତ୍ରାଙ୍କ ପ୍ରୋଗ୍ରାମ୍।''

''କ୍ରିକେଟ୍ ଖେଳ ବି ଚାଲିବ ସିଜନ୍‌ରେ। ସେତେବେଳେ ତ କ୍ଲାସ ବନ୍ଦକରି ଦୌଡ଼ିବୁ।'' ମା' ମୋ କଥାର ବାକୀ ଅଂଶ ପୂରଣ କରିଦେଇ କହିଲେ।

''ଏ ସବୁକୁ ବାଦ୍ ଦେଇ ମୁଁ ଖାଲି ପୁସ୍ତକ କୀଟ ହେବି ବୋଲି ଲେଖିଦେଇ ପାରିବିନି। ତା' ଯଦି ତୁମେ ଭାବୁଥାଅ ସେ ପାଠ ମୋ ଦେଇ ହେବନି।''

ମୋର ଏଭଳି କଥାରେ ମା' ଦବିଯିବା ଲୋକ ନୁହନ୍ତି, ତା' ମୁଁ ଜାଣେ। ତଥାପି ଯାହା ଇଛା ହେଲା କହିଦେଇ ସାରିଛି ତ।

''ବାବା, ତୁ କ'ଣ ସାନ ପିଲାଟିଏ ହୋଇଛୁ? ଘର ଛାଡ଼ି ଅଠର ଶହ କିଲୋମିଟର ଦୂରରେ ରହିଛୁ। ଏଭଳି କହିବାକୁ ବାପା, ମା' କ'ଣ ତୋ ପାଖରେ ଅଛନ୍ତି? ସେଠି ତୋ ଦାୟିତ୍ୱ ତୋର। ମୋର ବିଶ୍ୱାସ ତୋ ପାଇଁ କଣ ଭଲ, କଣ ମନ୍ଦ ତା' ତୁ ଠିକ୍ ବୁଝିପାରୁ।''

''ମା', ଥାଉ।''

ମୋର ବହି ଖାତା ଖୋଜି ମୁଁ ବାହାରି ପଡ଼େ ଲାଇବ୍ରେରୀରେ ବସି କିଛି ସମୟ ପଢ଼ିବାକୁ। ଆସିବା ପରେ ଦଶଦିନ ବିତିଗଲେ ବି ସେ ସବୁ ଛୁଇଁବାକୁ ଯେ ବେଳ ମିଳିନି।

''ମୋର ଦୁଃଖ, ପିଲାଟା କିଛି ବୁଝୁନି। ଦେଖ ତ, ସବୁ ଭୁଲି ଯାଉଛି!''

''ଥାଉ, ସବୁବେଳେ ଦୁଃଖ ବୋଲି ଶବ୍ଦ ତୁମ ମୁହଁରେ ଶୁଣିବାକୁ ଭଲ ଲାଗେନି ମୋତେ।''

ବାପାଙ୍କ କଥାରେ ମା' ପ୍ରତିବାଦ କଲେ।

''ସେ କ'ଣ କରିବ? ମୋର ତ ବିଶ୍ୱାସ ହେଉନି।''

''ନିଜେ ଏମିତି ବ୍ୟସ୍ତ ହେବାଠୁଁ ତାକୁ ବୁଝେଇ କହୁନ।''

''ତୁମେ କ'ଣ ଜାଣିନ? ମୁଁ ବୁଝେଇବା ଆରମ୍ଭ କଲେ ସେ ରିଆକ୍ଟ କରେ।''

''ସେ ଠିକ ଅଛି। ଏଭଳି ଚିନ୍ତା କରିବା ଭଲ ନୁହଁ।''

ବାହାର ପାଖ ବାରଣ୍ଡାରେ ଠିକ୍ ପରଦା ପାଖରେ ମୋ ପାଦ ସ୍ଥିର ହୋଇ ଗଲା କିଛି ସମୟ ପାଇଁ।

ଯାପରେ କଥାବାର୍ତ୍ତା ପ୍ରାୟ ଶୁଣା ଯାଇ ନ ଥିଲା। ରେଡ଼ିଓରେ ଭଲ୍ୟୁମ୍ ବଢ଼ାଇ ବାପା ସମ୍ବାଦ ଶୁଣୁଥିଲେ। ମୋ ପାଇଁ ବୁଣୁଥିବା ପୁଲ୍ଓଭରରେ ମା' ମନ ଦେଉଥିଲେ।

ସେ ସନ୍ଧ୍ୟାରେ ମୁଁ ଆଉ କୁଆଡ଼େ ଯାଇ ପାରିଲିନି।

ମା'ଙ୍କୁ ଆସି ପଚାରିଲି, ''ତୁମେ ଚିନ୍ମୟ ଅଙ୍କଲ୍‌ଙ୍କ ଘରକୁ ଯିବ କି? କହିବ ଯଦି ନେଇଯିବି ଏବେ।''

ସେ ଅସୁସ୍ଥ ଥିବାରୁ ମା' ସେଦିନ ଯିବେ ବୋଲି କହୁଥିଲେ। ତା ଛଡ଼ା ସପିଙ୍ଗ୍ ମଧ୍ୟ କରିବାର ଥିଲା, କହିବାକୁ ଗଲେ ସେଇଥିପାଇଁ ମୁଁ ଫେରି

ଆସିଥିଲି।

ମା' ହସିଲେ। ମୁଁ ସତରେ ଏତେ ଶୀଘ୍ର ବାହାରୁ ଫେରି ଆସିବି ଏ ବିଶ୍ୱାସ ତାଙ୍କର ନ ଥିଲା।

"ଆଜି ଥାଉ। ଇଚ୍ଛା ହେଉନି।" ବୁଣାଟା ରଖିଦେଇ ସେ ରୋଷେଇ ଘରକୁ ଉଠିଗଲେ।

ଅଳ୍ପ କିଛି ସମୟ ପରେ ସେ ଡ୍ରିଙ୍କିଙ୍ଗ୍ ଚକୋଲେଟ୍ କପ୍ ଓ ବିସ୍କୁଟ୍ ନେଇ ମୋ କୋଠରୀକୁ ଆସିବା ବେଳେ ମୁଁ ଟେବୁଲ୍ ପାଖରେ ବସି ଖାତାରେ କିଛି ନୋଟ୍ କରୁଥିଲି।

ମା' ମୋତେ କିଛି ନ କହି ନୀରବରେ ମୁଁ ଖଟ ଉପରେ ପକାଇଥିବା ପ୍ୟାଣ୍ଟ, ଟି' ସାର୍ଟକୁ ସଜାଡ଼ି ରଖି ଦେଇଥିଲେ।

ମୁଁ କହିଲି, "ମା' ଆଜି ଖୁବ୍ ଭଲ କରିଚ ଏ ଚକୋଲେଟ୍, ଠିକ୍ ଇଣ୍ଟରକଣ୍ଟିନେଣ୍ଟାଲ୍‌ର ହଟ୍‌ଚକୋଲେଟ୍ ପରି ଲାଗୁଛି।"

ମା' ମୋ କପାଳର ଅବିନ୍ୟସ୍ତ କେଶରାଶିକୁ ସଜାଡ଼ି ନେଇ ମୋତେ ଟିକେ ଗେହ୍ଲାକରି କହିଲେ, "ତୁ ପଢୁଥା, ବାବା। ମୁଁ ଏଠି ରହିଲେ ତୋ ସାଙ୍ଗରେ ଖାଲି ଗପ କରିବି।" ମୋ ଟେବୁଲରୁ କପ୍ ପ୍ଲେଟ୍ ଉଠାଇ ସେ ବାହାରି ଗଲେ ସେ କୋଠରୀରୁ।

× × × ×

ମୁଁ ଜାଣିନି ଏ ସବୁ କେମିତି କ'ଣ ହୁଏ। ମୋ ନ ଚାହିଁବା କଥାମାନ କିପରି ହୋଇଯାଏ।

ପ୍ରାୟ ରାତି ନଅଟା ପରେ ଛାତ୍ରାବାସର ପରିବେଶ ନିସ୍ତବ୍ଧ ହୋଇଆସେ, ଠିକ୍ ମୁଁ ପଢ଼ିବାକୁ ଆରମ୍ଭ କରିବା ସମୟରେ ସେମାନେ ମୋ କୋଠରୀର କବାଟରେ ନକ୍ କରନ୍ତି।

ବାହାରେ ଅସହ୍ୟ ଥଣ୍ଡା ସତ୍ତ୍ୱେ ସେମାନେ ଜିଦ୍ କରନ୍ତି ନାଇଟ୍ ସୋ'ରେ ଫିଲ୍ମ ଯିବାକୁ। ମୋର ବି ଖୁବ୍ ଇଚ୍ଛା ହୁଏ। ସିନେମାରୁ ଫେରି ଦୁଇଘଣ୍ଟା ପଢ଼ିଲେ ଚଳିବ।

ମା'ଙ୍କୁ ଏ ସବୁ କଥା କହିଛି, ଯାପରେ ମା' କାହିଁକି କିଛି କହନ୍ତିନି। ମୁଁ ତାଙ୍କୁ ଅନେକ କଥା କହେ, "ଆଶ୍ଚର୍ଯ୍ୟ ମା', ସେମାନେ ଡ୍ରଗସ୍ ଖାଆନ୍ତି,

ପ୍ରଚୁର ଡ୍ରିଙ୍କ୍ କରନ୍ତି। ସାଙ୍ଗଝିଅମାନଙ୍କୁ ନେଇ ବାହାରେ ବୁଲାବୁଲି କରି ଅନେକ ରାତ୍ରିରେ ଫେରନ୍ତି। କେତେବେଳେ ପଢ଼ନ୍ତି କେଜାଣି, ପରୀକ୍ଷାରେ ତ ବେଶ୍ ଭଲ କରନ୍ତି।''

''ଆଚ୍ଛା ମା, ସେଦିନ ଯେଉଁ ଝିଅ ସହିତ ତୁମକୁ ଚିହ୍ନା କରେଇ ଦେଇଥିଲି ମନେ ଅଛି? ରୂପା ଶ୍ରୀବାସ୍ତବ- ଦିନେ ଜିଦ୍ କଲା ତା' ସହିତ ସପିଙ୍ଗ୍ ପାଇଁ ଯିବାକୁ। ସେ ଦିନ ମୁଁ କ୍ଲାସ ମିସ୍ କରିବାକୁ ଚାହିଁଲିନି। କେତେଥର ସେ ଡ଼ାକିଛି ଅନେକ ଥାଡ଼େ, ମୁଁ ଯାଇପାରେନା। ଏମିତି ଯିବାଟା କ'ଣ ଖରାପ ମା'!''

''ମା, କିଛି କହୁନ ଯେ?''

''କାହିଁକି ଯିବୁ? ଠିକ୍ ନୁହେଁ।''

''ମୁଁ ଜାଣେ ତୁମେ ଏଇୟା କହିବ।''

''ଏ ସଂସାରକୁ ଚିହ୍ନିବାକୁ ତୋର ବୟସ ହୋଇନି।''

ମା'ଙ୍କ ପାଖରେ କିଛି ଦୂରରେ ମୁଁ ଶୋଇ ରହିଥାଏ। ଆମେ ବାପାଙ୍କୁ ଅପେକ୍ଷା କରି କଥାବାର୍ତ୍ତା କରୁଥାଉ। ରାତି ବାରଟା ପାଖାପାଖି ହେବ।

ସେଦିନ ତାଙ୍କ କ୍ଲବରେ ମିଟିଂ, ଡ଼ିନର୍ ପରେ ସେ ଡ଼େରିରେ ଫେରିବାର ଥାଏ।

ଅଳ୍ପ ଦୂରରେ ଟେବୁଲରେ ଫୋନ୍‌ଟା ବାଜିଲା। ମା' ଉଠିଗଲେ।

''କେବେ ଫେରିଲେ? ସବୁ ଭଲ ତ?''

- - - - - -

''ନା ଶୋଇନି...।'' ମା' ଫୋନ୍ ରଖିଦେଲେ।

''ଦିନେଶ ମଉସା ବୋଧହୁଏ?''

''ହଁ'', ଆମ କଥାବାର୍ତ୍ତାର ଶେଷ ଯେଉଁଠି, ମା' ବୋଧହୁଏ ସେ ପାଖକୁ ଫେରିଯିବାକୁ ଚେଷ୍ଟା କରୁଥିଲେ।

ଦିନେଶ ମଉସା କାହିଁକି ମା'ଙ୍କୁ ଫୋନ୍ କରନ୍ତି? ମା' ବୋଧହୁଏ ଖୁବ୍ ବିଚଳିତ। ଏକା ବିଛଣାରେ ଶୋଇଥିଲେ ବି ଲାଇଟ୍‌ଟା ଲିଭିଥିବାରୁ ମା'ଙ୍କ ମୁହଁ ମୁଁ ଦେଖି ପାରୁ ନ ଥିଲି।

ସେଇଦିନ ରାତିରେ ବାପାଙ୍କୁ ସେ କହୁଥିଲେ, ''ବନ୍ଧୁତା କଟିଯାଉ ପଛକେ

ତୁମେ ତାଙ୍କୁ ଫୋନ୍ କରିବାକୁ ମନା କରିଦିଅ।''

''ଏତେ ବ୍ୟସ୍ତ କାହିଁକି ? ବୁଢ଼ାଟା ତୁମର କ'ଣ କ୍ଷତି କରୁଛି ?'' ବାପାଙ୍କୁ ଏମିତି ହସିବା କ୍ୱଚିତ୍ ଦେଖିଛି ମୁଁ।

''ପ୍ରତି ରାତିରେ ଫୋନ୍ ! ଆଜି ଅବଶ୍ୟ ଶୋଇ ନ ଥିଲି। ଭାବିଲି, ଯେବେ ନିଦରୁ ଉଠି ଫୋନ୍ ଧରେ !''

''ତୁମ ପ୍ରତି ଲାଇକିଙ୍ଗ୍ ଡ଼େଭଲପ୍ କରି ଯାଇଛି। କ'ଣ କରାଯିବ ଆଉ ?''

ମୁଁ ଜାଣେ ବାପା କେବେହେଲେ ବିଛଣାରୁ ଉଠି ଫୋନ୍ ପାଖକୁ ଯିବେନି, ମା' ବାଧ। ମୁଁ ବାହାରକୁ ପଢ଼ିବାକୁ ଯିବା ପୂର୍ବରୁ ଦେଖିଛି ରାତିରେ ମା'ଙ୍କର ଫୋନ୍ ଆସେ। କେତେଥର ଆମେ ପିଲାମାନେ ଫୋନ୍ ଧରି ମା'ଙ୍କୁ ଡ଼ାକି ଦେଇଛୁ।

ସେ ବୋଧହୁଏ ଠିକ୍ କହୁଥିଲେ, ''ଏ ସଂସାରକୁ ଚିହ୍ନିବାକୁ ତୋର ଡ଼େରି ଅଛି।'' ଏ ସବୁ ଅଧିକ ମୁଁ ଚିନ୍ତା କରି ପାରେନା।

ମା' କହନ୍ତି, ''ମନ ତ ଅନେକ କଥା ଚାହେଁ। ଶରୀର ମଧ୍ୟ ମନର ସାଥୀ ହୋଇଯାଏ। କିନ୍ତୁ ପ୍ରତି କ୍ଷେତ୍ରରେ ଆମର ଆତ୍ମା ଖୁବ୍ କଷ୍ଟ ପାଏ। ସେ ମନକୁ ଶାସନ କରେ। ଏଇ ମଣିଷ ନିଜକୁ ଚିହ୍ନି ପାରେ ନାହିଁ। ନିଜ ପାଇଁ ନିଜେ ଜାଗ୍ରତ ନ ହେଲେ ଅନ୍ୟ କେହି କିଛି କରି ପାରିବେନି।''

''ମା' ତୁମେ ପୁଣି ପ୍ରିଚ୍ କଲ ? ନିଦ ଆସିଲାଣି, ମୁଁ ଯାଉଛି ମୋ ବିଛଣାକୁ।''

ଟ୍ରେନ୍‌ଟା ଧାଇଁଛି। ଅନେକ ଦୂର ଯିବାକୁ ହେବ। କାହିଁକି ମନେ ପଡ଼େ ଏତେ କଥା ? ମନର କେଉଁ ସ୍ତରରେ ରହିଯାଏ ଏ ସବୁ !

''ପହଞ୍ଚି ଟେଲିଗ୍ରାମ କରିବୁ, ଚିଠି ଦେବୁ।'' ବାପାଙ୍କର ମାତ୍ର ଏତିକି କଥା। ଥାର୍ଡ଼ ବେଲ୍ ବାଜି ସାରିଥିଲା ବୋଧହୁଏ।

ଆଉ ମା' ! ଶେଷରେ ତାଙ୍କୁ ମୁଁ ଚାହିଁଥିଲି। ସେ ମୋ କପାଳ ଚୁମ୍ବନ କଲେ। ମୋତେ ଟିକିଏ ପାଖକୁ ନେଇ କହିଲେ, ''ଧନରେ, ଏ ସମୟକୁ ହାତରୁ ଛାଡ଼ିବୁନି।''

ମୁଁ ଝରକା ପାଖରେ ବସିଥିବା ବେଳେ ସେ ମୋ ହାତଟା ଧରିଥିଲେ ଟ୍ରେନ୍ ସ୍ପିଡ଼୍ ନେବା ପର୍ଯ୍ୟନ୍ତ। ତା ପରେ ସବୁ ଅସ୍ପଷ୍ଟ।

ମୁଁ ପକେଟରୁ ରୁମାଲ କାଢ଼ି ଆଖିରୁ ଧୂଳି ପୋଛିଲି । ତା ପରେ ପ୍ରଶସ୍ତ ଆକାଶ, ଘନ ସବୁଜ ଜଙ୍ଗଲ ପ୍ରତି ଆଖି ଫେରାଇ ଏ ଜୀବନର ପରିସୀମା ମାପିବାକୁ ଚେଷ୍ଟା କରୁଥିଲି । □ □ □

'ସୁଚରିତା' ୧୯୮୨

# ସଳିତା

ଆକାଶରେ ଖରା ବର୍ଷାର ଲୁଚକାଳି ଖେଳ ଚାଲିଥିଲା ବେଳେ ଅକସ୍ମାତ ଥଣ୍ଡା କାଲୁଆ ପବନ ସାଙ୍ଗରେ ଆରମ୍ଭ ହୋଇଗଲା ଅଦିନିଆ ଭୟଙ୍କର ଝଡ଼ବର୍ଷା।

ସେତେବେଳେ ବୈଠକ ଘରେ ଉପସ୍ଥିତ ଥିଲେ ସେ ଦିନର ଅତିଥି ସୁପ୍ରୀତ୍। ଅନେକ ସମୟ ଧରି ଚାଲିଥିବା ଆଲୋଚନାର ଖିଅ ହଜିଯିବା ପରେ ଆମ କଥାବାର୍ତ୍ତା କେତେ ମୁହୂର୍ତ୍ତ ପାଇଁ ବନ୍ଦ ହୋଇଗଲା। ଖୋଲା ଝରକା ଦେଇ ଆମେ ସମସ୍ତେ ଅପରାହ୍ନର ଚପଳ ଆକାଶକୁ ଚାହିଁ ରହିଥିଲୁ। ପାଖ କୋଠରୀରେ ଅନବରତ ଫୋନ୍ ବାଜୁଥିଲା। ପବନରେ ଅଫିସ୍ ଟେବୁଲ୍‌ର କେତେକ ଦରକାରୀ କାଗଜ ଇତସ୍ତତଃ ବିକ୍ଷିପ୍ତ ହୋଇଥିବା ଲକ୍ଷ୍ୟ କରି ଅନୁପମ ଉଠି ଯାଇଥିଲେ। ବୋଧହୁଏ ଠିକ୍ ସେତିକିବେଳେ ମୋତେ କିଛି ପଚାରିବା ଭଙ୍ଗୀରେ ଚାହିଁ ରହିଥିଲେ ସୁପ୍ରୀତ୍। ପରକ୍ଷଣରେ ବସିଥିବା ଚେୟାରରୁ ଉଠି ଆସି ଦିଭାନ୍‌ରେ ମୋ ପାଖକୁ ପ୍ରାୟ ଲାଗି ବସି ରହି ଅନୁଚ୍ଚ ସ୍ୱରରେ ପ୍ରଶ୍ନ କଲେ :

-ସଳିତା ଏବେ କେଉଁଠି? ତୁମ ସଙ୍ଗେ ଦେଖା ହୁଏ ନା? କିମିତି ଅଛି ସେ? ଆଉ ତା'ର ସେଇ ଛୋଟ ପୁଅଟି? ଭଲ ଅଛି ତ? ବହୁତ ଦିନରୁ ତାକୁ ଦେଖିନି।

ତା'ପରେ ଭାବାନ୍ତର, ଅନେକ ଦୀର୍ଘଶ୍ୱାସ। ସୁପ୍ରୀତ୍ ସ୍ଥିର, ଉଦାସ ଦୃଷ୍ଟିରେ ଚାହିଁ ରହିଥିଲେ ମୋତେ। ହୁଏତ ଆଶା କରୁଥିଲେ, ଏଇ ସବୁ ପ୍ରଶ୍ନର ଉତ୍ତର ମୁଁ ଏକାଥରକେ ଦେଇ ଦେବି। ମାତ୍ର ମୁଁ ଯେପରି ବିସ୍ମୟ, ଆନନ୍ଦ, ବିରହର

ଏକ ରୋମାଞ୍ଚକର ସ୍ମୃତିରେ ହତବାକ୍ ହୋଇ ଯାଇଥିଲି। ଦୀର୍ଘ କୋଡ଼ିଏ ବର୍ଷ ପରେ ଏବେ ବି ସଳିତାକୁ ମନେ ରଖିଛନ୍ତି ସୁପ୍ରୀତ୍!

ସୁନ୍ଦରୀ ପତ୍ନୀ, ଦୁଇଟି ପୁତ୍ର କନ୍ୟାର ସୁଖୀ ସଂସାର। ଚାକିରୀ ଜୀବନରେ ସେ ପ୍ରତିଷ୍ଠିତ। ମାଡ୍ରାସର ଏକ ବିରାଟ ଶିଳ୍ପ ପ୍ରତିଷ୍ଠାନରେ ମୁଖ୍ୟ ପରାମର୍ଶଦାତା ରୂପେ ସେ ଅବସ୍ଥାପିତ। ବହୁ ଦିନ ଧରି ଓଡ଼ିଶାଠାରୁ ଦୂରରେ ରହୁଥିଲେ ବି ନିଜର ସାହିତ୍ୟିକ ସମ୍ମାନ ବଜାୟ ରଖିଥିଲେ। ଏ ବର୍ଷ ଓଡ଼ିଆ ସାହିତ୍ୟରେ ଶ୍ରେଷ୍ଠ କବିର ସମ୍ମାନ ସେ ପାଇଥିଲେ। ସେଇ ଉପଲକ୍ଷେ ଅନୁପମ ନିମନ୍ତ୍ରଣ କରିଥିଲେ ଘନିଷ୍ଠ ବନ୍ଧୁ ସୁପ୍ରୀତ୍‌କୁ।

ସାହିତ୍ୟ, ସଂସ୍କୃତି, ସମାଜ, ଆମ ପୁଅଝିଅ, ପରିବାର - ଏଇଭଳି କେତେ କ'ଣ ଥିଲା ଆଳାପର ବିଷୟବସ୍ତୁ।

ଏମିତି ହସଖୁସି ମଧ୍ୟରେ କଥାବାର୍ତ୍ତା କରୁ କରୁ ସୁପ୍ରୀତ୍ କିପରି ଖୁବ୍ ବଦଳି ଗଲେ। ପୂର୍ବର ଚଞ୍ଚଳତା ହଜିଯାଇ ସେ ମନେହେଲେ ଅନ୍ୟ କେହି ଜଣେ। ସଳିତାର ଲେଖା ସାଙ୍ଗରେ ପ୍ରକାଶ ପାଇଥିବା ଫଟୋଟିକୁ ଦେଖି ପଚାରିଲେ-

:ସଳିତା କ'ଣ କିଛି ବଦଳି ନାହିଁ? ଠିକ୍ ସେଇମିତି ପୂର୍ବଭଳି ଅଛି!

ସୁପ୍ରୀତ୍ ହୁଏତ ବହୁ ପଛକୁ ଫେରି ଯାଇଥିଲେ। ଏ ମଧ୍ୟରେ ସମୟ ଯେ କେତେପାଦ ଆଗେଇ ଯାଇ ତାକୁ ମଧ୍ୟବୟସ୍କ କରି ଦେଇଛି, ତା' ସମ୍ଭବତଃ କିଛିକ୍ଷଣ ପାଇଁ ସେ ଭୁଲି ଯାଇଥିଲେ। ସଳିତାର ସ୍ୱାସ୍ଥ୍ୟର ପରିବର୍ତ୍ତନ ହୋଇ ସେ ଖୁବ୍ ମୋଟା ହୋଇ ଯାଇଛି। ମୁଣ୍ଡର ବାଳ ସବୁ ଧଳା ହେବାକୁ ଆରମ୍ଭ କରି ପ୍ରକୃତ ବୟସଠାରୁ ସେ ମନେ ହେଉଛି ଅଧିକ ବୟସ୍କା। ସେଦିନ ଲେଖା ସାଙ୍ଗେ ଫଟୋଟିଏ ଦେବାକୁ ରାଜି ନ ହେବାରୁ ମୁଁ ଜୋର୍‌କରି ଛଡ଼ାଇ ଆଣିଥିଲି ଏଇ ଫଟୋଟି। ଏ ଖଣ୍ଡିକ ଥିଲା ତା'ର କେତେବର୍ଷ ତଳର ଛବି। ଏ ସବୁ ସୁପ୍ରୀତ୍‌କୁ ମୁଁ କହି ନ ଥିଲି।

ମୁଁ ଲକ୍ଷ୍ୟ କରିଥିଲି ସୁପ୍ରୀତ୍‌ଙ୍କ ମୁଖମଣ୍ଡଳରେ ହର୍ଷ, ବିଷାଦର ମିଳିତ ବର୍ଣ୍ଣୋତ୍ସବ। କ'ଣ ଭାବୁଥିବା ବେଳେ ହଠାତ୍ ସେ କହିଲେ-

ଖୁବ୍ ଭଲ ଲେଖୁଛି ସଳିତା। ତା' ଲେଖା ସବୁ ମୋତେ ଭାରି ଭଲ ଲାଗେ। ଏବେ ଆଉ ତୁମକୁ ଲେଖାଫେଖା କିଛି ଦେଉଛି କି?

ଭଲ ଲେଖାଟିଏ ପାଇଁ ନିଜେ ଯାଇ ନ ଲାଗିଲେ ସେ କ'ଣ

ସହଜେ ଦିଏ ? ଏବେ କେତେଦିନ ହେଲା ମୁଁ ଯାଇପାରିନି ।

ମୋ କହିବା ଶେଷ ନ ହେଉଣୁ ଛୋଟ ପିଲାଙ୍କ ଭଳି ସେ ପୁଣି ପ୍ରଶ୍ନ କଲେ-

: ସଳିତା ସାଙ୍ଗରେ ତୁମର ଖୁବ୍ ଦେଖାହୁଏ ନା ?

ଉତ୍ତରକୁ ଅପେକ୍ଷା ନ କରି ସୁପ୍ରୀତ୍ କହି ଚାଲିଲେ,

କେତେ ଭାବିଛି ସଳିତାକୁ ଦେଖା କରିବି, ଯାଇଥିଲି ପଣ୍ଡିଚେରୀ । ଶୁଣିଲି, ମୁଁ ଯିବାର ପୂର୍ବଦିନ ସେ ସେଠାରୁ ଚାଲି ଯାଇଛି ଜୟପୁର । ସମ୍ମିଳନୀ ଶେଷ ପରେ ସେ ଫେରିଯାଇଛି ତା'ର କାର୍ଯ୍ୟସ୍ଥଳୀକୁ । ମୋର ଛୁଟି ସରି ଆସିଥିଲା । ଜୟପୁର ଯାଇ ଆଉ ଦୁଇ, ତିନି ଦିନ ସମୟ ଦେବାକୁ ମୋ ହାତରେ ନ ଥିଲା । ମୁଁ ଫେରି ଆସିଲି ମାଡ୍ରାସ ।

ମୁଁ ଆଉ କିଛି କହିବାକୁ ଯାଇ ନୀରବ ରହିଗଲି । ମୁଁ ଜାଣିଥିଲି ଏ କୋଡ଼ିଏ ବର୍ଷ ମଧ୍ୟରେ ସୁପ୍ରୀତ୍‌ଙ୍କର ସଳିତା ସହିତ କେବେ ବି ଦିନେ ସାକ୍ଷାତ ହୋଇନି ।

ସେ ତ ଅନେକ କଥା...

ସଳିତା ସେତେବେଳେ ମୋ ସାଙ୍ଗରେ ରେଭେନ୍‌ସା କଲେଜରେ ଆଇ.ଏସ୍.ସି. ପଢୁଥିଲା । ଆଇ.ଏସ୍.ସି ପରେ ଗଲା ମେଡ଼ିକାଲ କଲେଜ । ଭଲ ଛାତ୍ରୀ ଭାବରେ ତା'ର ଖୁବ୍ ନାଁ ଥିଲା । ସୁପ୍ରୀତ୍ କଳାର ଛାତ୍ର, ଏମ୍.ଏ ପାଶ୍ ପରେ ସେ ଗଲେ ବମ୍ବେରେ ପଢ଼ିବାକୁ । ସଳିତା ପାଖକୁ ଚିଠିପତ୍ର ଖୁବ୍ ଆସେ । ସୁପ୍ରୀତ୍ ଛୁଟିରେ ଆସିଲେ ଦେଖାହୁଏ ଦୁଇଜଣଙ୍କର । ପାଠ ଶେଷ ହେବା ପରେ ସେମାନେ ନିଶ୍ଚୟ ବିବାହ କରିବେ ସ୍ଥିର କରିଥିଲେ ।

ପରସ୍ପରଙ୍କ ପରିବାରର ମତାମତ ବିଷୟରେ ଚିନ୍ତା କରିବା ପୂର୍ବରୁ ହଠାତ୍ ସବୁ କିପରି ବଦଳିଗଲା । ସଳିତା ସେତେବେଳକୁ ଡ଼ାକ୍ତରୀର ଶେଷବର୍ଷର ଛାତ୍ରୀ । ତା' ଚିଠିର ଉତ୍ତର ଦେବାକୁ ଯାଇ ସୁପ୍ରୀତ୍ ଯେପରି କ୍ଳାନ୍ତ ହୋଇ ଯାଉଥିଲେ । ଅନେକ ଡ଼େରିରେ ଆସୁଥିବା ପତ୍ର ଖଣ୍ଡିକରେ ସଳିତାର ପରୀକ୍ଷା ପାଇଁ ଶୁଭେଚ୍ଛା ଜଣାଇ ସେ ଲେଖୁଥିଲେ - ତୁମେ ଏବେ ପାଠ ପାଇଁ ଖୁବ୍ ଲାଗିଯାଇଛ । ଏ ସମୟରେ ବାରମ୍ବାର ଚିଠି ଦେଇ ତୁମକୁ ହଇରାଣ କରିବାକୁ ମୁଁ ଚାହୁଁନାହିଁ ।

ସୁପ୍ରୀତ୍‌ଙ୍କର ନୂଆ ଚାକିରୀ । ପ୍ରଥମ କରି ପରିଚୟ ପଡ଼ୋଶିନୀ ମିତ୍ରା

ସଙ୍ଗରେ। ଏମିତି ବନ୍ଧୁତ୍ୱ, ଅଥଚ ମେଳାପୀ ସୁପ୍ରୀତ୍ ସେ ପରିବାରର ଜଣେ ହୋଇ ଗଲେ। ପ୍ରଥମେ ପ୍ରଥମେ ମିତ୍ରାର ମାନ ଅଭିମାନକୁ ସେ ଅନ୍ୟ ଭାବରେ ନେଉଥିଲେ। ଧୀରେ ଧୀରେ ତାଙ୍କର ପ୍ରବାସୀ ସ୍ନେହ କାଙ୍ଗାଳ ମନରେ ବି ପରିବର୍ତ୍ତନ ହେଲା, ସେ ନିଜେ ବି ଜାଣି ପାରିଲେନି।

ମିତ୍ରା ସହିତ ଯେତେବେଳେ ବିବାହର ପ୍ରଶ୍ନ ଉଠିଲା, ସେତେବେଳେ ସେ ଫେରି ଆସୁଥିଲେ ପଛଦିନମାନଙ୍କୁ। ମିତ୍ରାର ବାପା, ମା'କୁ ସେ ସ୍ପଷ୍ଟଭାବେ ମନା କରି ପାରି ନ ଥିଲେ ମଧ ଜଣେ ବନ୍ଧୁଙ୍କ ହାତରେ ଖବର ଦେଇଥିଲେ- ଏତେସବୁ ଆତ୍ମୀୟତାର ଅର୍ଥ ଯେ ମିତ୍ରାକୁ ବିବାହ କରିବା, ତା' ଆପଣମାନେ କାହିଁକି ଭାବୁଛନ୍ତି ?

ସୁପ୍ରୀତ୍‌ର ଏଭଳି ପ୍ରତ୍ୟୁତ୍ତରରେ ସେମାନେ ନୀରବ ରହିଗଲେ। ମିତ୍ରା କିନ୍ତୁ ଜିଦ୍ କରି ବସିଲା, ସେ ସୁପ୍ରୀତ୍‌କୁ ହିଁ ବିବାହ କରିବ ଏବଂ ସେହି ଜିଦ୍ ନେଇ ସେ ଚିଠି ଲେଖିଲା ସୁପ୍ରୀତ୍‌ଙ୍କର ମା'ଙ୍କୁ। ସୁପ୍ରୀତ୍ ଯଦି ମୋତେ ବିବାହ ନ କରନ୍ତି, ମୁଁ ଜୀବନ ହରାଇ ଦେବି।

ପରିସ୍ଥିତି ହୁଏତ ସେଭଳି କିଛି ଜଟିଳ ନ ହୋଇଥିଲେ ଝିଅଟା ଏପରି ସାହସରେ ଚିଠି ଲେଖି ନ ଥାନ୍ତା। ସୁପ୍ରୀତ୍‌ଙ୍କର ପରିବାରର ସମସ୍ତେ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଥିଲେ। ଅଥଚ ସୁପ୍ରୀତ୍ ଖୁବ୍ ବ୍ୟସ୍ତ, ବିବ୍ରତ ରହି ନିଜକୁ ସମସ୍ତଙ୍କଠାରୁ ଅଲଗା କରିଦେଲେ। ଘରକୁ ଚିଠିପତ୍ର ଦେଉ ନ ଥିଲେ କିମ୍ବା ମିତ୍ରାର ପରିବାର ସହିତ ଆଦୌ ସମ୍ପର୍କ ନ ଥିଲା। କିନ୍ତୁ ବାରମ୍ବାର ମିତ୍ରା ଚିଠିରେ ସେଇ ଗୋଟିଏ କଥା "ତୁମକୁ ନ ପାଇଲେ ମୁଁ ବଞ୍ଚିପାରିବିନି, ସୁପ୍ରୀତ୍।"

ଶେଷରେ ମା' ବାପା ଉଭୟ ଲେଖିଲେ : ତୁ ମିତ୍ରାକୁ ବିବାହ କଲେ ଆମେ ଆଦୌ ଅମତ ହେବୁନି।

ଏସବୁ କ'ଣ କିପରି ଚାଲୁଛି, ବୁଝିପାରୁ ନ ଥିଲେ ସୁପ୍ରୀତ୍। ସମସ୍ତେ ମିଶି ତାକୁ ଯେପରି ଗୋଟାଏ ଅଦୃଆ ଜାଲ ମଧ୍ୟରେ ପକାଇ ଦେଇଥିଲେ। ଏ ପାଖରେ ନୀରବ ରହିଗଲା ସଙ୍ଗିତା। ସୁପ୍ରୀତ୍‌କୁ ଠିକ୍ ଭାବେ ବୁଝିବା ପାଇଁ ସେ ନିଜକୁ ଅବସର ଦେଇ ନ ଥିଲା। ଅନେକଦିନ ଧରି ସୁପ୍ରୀତ୍‌ଙ୍କ ଚିଠି ନ ପାଇବା ଏବଂ ଅନ୍ୟମାନଙ୍କ ଠାରୁ ତାଙ୍କର ବିବାହ ହେବ, ଏ ଭଳି ଖବର

ହୁଏତ ସେ ଜାଣିଥିଲା । ଏସବୁ ସତ୍ତ୍ୱେ ମଧ୍ୟ ତା' ପାଇଁ ସ୍ଥିର କରାଯାଇଥିବା ବିବାହ ପ୍ରସ୍ତାବ ସବୁକୁ ସେ ଦୃଢ଼ତାର ସହିତ ପ୍ରତ୍ୟାଖ୍ୟାନ କରିଦେଇ ବୃତ୍ତି ପାଇ ବିଦେଶ ଯିବା ପ୍ରସ୍ତାବକୁ ତ୍ୱରାନ୍ୱିତ କରିଥିଲା । ସଳିତା ଭାବିଥିଲା, ସେ ବିବାହ ନ କରି ରହିଲେ ସୁପ୍ରୀତ୍ ତାଙ୍କ ଭୁଲର ଉପଯୁକ୍ତ ଶାସ୍ତି ପାଇବେ କିମ୍ବା ହୋଇପାରେ, ସୁପ୍ରୀତ୍‌କୁ ଭୁଲି ଅନ୍ୟତ୍ର ବିବାହ କରି ସୁଖସଂସାର ଗଢ଼ିବା ଭଳି ମାନସିକ ପ୍ରସ୍ତୁତି ସେ କରି ପାରି ନ ଥିଲା । ଏହାପରେ ଉଚ୍ଚଶିକ୍ଷା ପାଇଁ ଖୁବ୍ ଶୀଘ୍ର ସେ ବାହାରକୁ ଚାଲି ଯାଇଥିଲା ।

ସଳିତା ଦୂରକୁ ଚାଲିଯାଇଛି । ସୁନ୍ଦରୀ ମିତ୍ରା ଲୁହ ଝରାଇ ଅପେକ୍ଷା କରିଛି ତାଙ୍କୁ । ସୁପ୍ରୀତ୍ ଅସହାୟ, ନିରୁପାୟ ହୋଇ ଶେଷରେ ମିତ୍ରାକୁ ବିବାହ କରିବାକୁ ସ୍ୱୀକୃତି ଦେଲେ । ସଳିତା ବି ପଛଦିନର ସ୍ମୃତିକୁ ସାଇତି ରଖିବା ଭଳି ଭାବପ୍ରବଣତାକୁ ଦୂରେଇ ଦେଇ ଡ଼ାକ୍ତର ବନ୍ଧୁ ଦେବବ୍ରତକୁ ବିବାହ କରିବା ଖବର ବହୁ ଡେ଼ରିରେ ମୁଁ ଜାଣିଥିଲି । ଦେବବ୍ରତଙ୍କ ସହ ବିଦେଶରେ ଘନିଷ୍ଠତା...ଫେରିଆସି ସେମାନେ ବିବାହ କଲେ ।

: ଆଃ ବିଚାରୀ ବିବାହ କରି ବି ସୁଖୀ ହୋଇପାରିଲାନି ।

ଅସ୍ପଷ୍ଟ ସ୍ୱରରେ ବ୍ୟକ୍ତ କଲେ ସୁପ୍ରୀତ୍ । ମୁଁ ନିଜ ଚିନ୍ତାରୁ ଫେରିଆସି ତାଙ୍କୁ ଚାହିଁ କହିଲି-

: ଦେଖାହେଲେ ଏ ସବୁ କଥା କେବେ ବି ମୁଁ ତାକୁ ପଚାରି ନାହିଁ ।

ବିବାହର ମାତ୍ର କେତୋଟି ବର୍ଷ ପରେ କୋର୍ଟ କଚେରୀର ଆଶ୍ରୟ ନ ନେଇ ମଧ୍ୟ ସଳିତା ଦେବବ୍ରତଙ୍କଠାରୁ ଦୂରେଇ ରହିଲା । ଡ଼ାକ୍ତରୀ ଜୀବନରେ ଜଣେ କର୍ତ୍ତବ୍ୟନିଷ୍ଠ ଡ଼ାକ୍ତର ଭାବରେ ସଳିତାର ଯଥେଷ୍ଟ ସୁନାମ । ପୁଅଟିକୁ ନିଜ ପାଖରେ ରଖି ସେ ମଣିଷ କରୁଛି ।

ତା'ର ଏଇ ବିଫଳ ଜୀବନବୃତ୍ତାନ୍ତ ସୁପ୍ରୀତ୍‌ଙ୍କ ଅନ୍ତରକୁ କ୍ଷତାକ୍ତ କରି ଦେଇଥିଲା । ବାସ୍ତବ ଜୀବନରେ ମାନସୀକୁ ପାଇପାରି ନ ଥିଲେ ମଧ୍ୟ ଚିରଦିନ ପାଇଁ ସେ ସାଇତି ରଖିଥିଲେ ତା'ର ସ୍ମୃତିକୁ ।

ଆଜିର ସଳିତା ସେଦିନ କଲେଜରେ ପ୍ରଥମ କରି ପାଦ ଦେଇଥିବା ଅଳସୀ ତନ୍ୱୀ କିଶୋରୀଟିଏ ନୁହଁ । ଦେଖିଲେ ମନେ ହୁଏ, ଚିକିତ୍ସା କ୍ଷେତ୍ରରେ କେବଳ ସୁନାମ ପାଇଁ ନୁହେଁ, ପ୍ରତି ମୁହୂର୍ତ୍ତରେ ଦୌଡ଼ି ଦୌଡ଼ି ନିଃସହାୟ

ଅସୁସ୍ଥ ମାନବର ସେବା କରି ନେବାକୁ ସେ ଯେପରି ଜୀବନର ବ୍ରତ କରି ନେଇଛି। ପଚାରିଲେ କହେ- ତୁ ଜାଣିନୁ, ଶିଖା। ଏମିତି ଦଉଡୁଛି ବୋଲି ତ ବଞ୍ଚିଛି।

ସେଇ ସବିତା...ସମସ୍ତ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଏବେ ବି ସୁପ୍ରୀତ୍‌ଙ୍କର ଜନ୍ମତିଥିରେ ଜଗନ୍ନାଥଙ୍କ ପାଖରେ ଘିଅଦୀପ ଜଳାଏ। ବଡ଼ଦାଣ୍ଡରେ ଅସଂଖ୍ୟ ଦୀନ, ଅସହାୟ ବୁଭୁକ୍ଷୁଙ୍କୁ ଭୂରିଭୋଜନ ଦେଇ ତୃପ୍ତ କରେ।

ସୁପ୍ରୀତ୍‌ଙ୍କୁ ଏସବୁ ମୁଁ ଇଚ୍ଛାକରି କହି ନ ଥିଲି। ଆଉ ଯା' ପରେ ସବିତା ସହିତ ଅନେକଥର ଦେଖାହେଲେ ବି ତାକୁ ସୁପ୍ରୀତ୍‌ଙ୍କର ଏହି ଅନ୍ତର୍ଲିପି ବ୍ୟକ୍ତ କରି ନ ପାରିବାର ଯନ୍ତ୍ରଣାକୁ ଜାଣି ଜାଣି ମୁଁ ସହ୍ୟକରି ନେଉଥିଲି, କାହିଁକି ନା ମୋର ମନେହୁଏ ଆମେ ପ୍ରତ୍ୟେକ ଯେମିତି ଏ ସମାଜରେ ମୁଖାପିନ୍ଧି ମଣିଷର ଅଭିନୟ କରୁଥିଲେ ବି ମଣିଷ ନ ହୋଇ ଧୀରେ ଧୀରେ ଛାଇ ପାଲଟି ଯାଇଛୁ। □ □ □

ଆକାଶବାଣୀ 'ବିବିଧଭାରତୀ' ସୌଜନ୍ୟରୁ
ଝଙ୍କାର, ୧୯୮୦

# ମହାତ୍ମା

ନୀଳ ଆକାଶରେ ସୂର୍ଯ୍ୟସ୍ନାତ କପୋତଟି ଡ଼େଣା ମେଲି ଉଡ଼ି ଆସୁଥିଲା। ସେମାନେ ସମସ୍ତେ ଉତ୍ସୁକ ନୟନରେ ସେଇଆଡ଼େ ଚାହିଁ ରହିଥିଲେ। କିଏ ଜଣେ ଭାବବିହ୍ୱଳ ହୋଇ କହି ପକାଇଲେ, ''ହେଇ ଦେଖନ୍ତୁ, ଆସିଗଲା ଶାନ୍ତିର ବାର୍ତ୍ତାବହ, ସେ ବାବାଙ୍କୁ ବାଟ କଢ଼େଇ ନେଇ ଆସୁଛି ଆମ ପାଖକୁ।''

ଜୟ ଜୟ ନାଦରେ ଗଗନ ପ୍ରକମ୍ପିତ। ବୋଇଂ ସାତଶହ ସାତ ଲ୍ୟାଣ୍ଡ୍ କରୁଛି। ଗୈରିକ ବସ୍ତ୍ର ପରିହିତ ଗୌରବର୍ଣ୍ଣ, ଉଜ୍ଜ୍ୱଳ କାନ୍ତି, ମୁଖରେ ସ୍ମିତହାସ୍ୟ ଭକ୍ତଗଣଙ୍କ ପ୍ରତି ଆଶୀଷର ବାରିଧାରା ସତେକି ଝରିପଡ଼ୁଛି ସେଇ ଜ୍ଞାନଦୀପ୍ତ ଚକ୍ଷୁଦ୍ୱୟରୁ! ବାବା ଅମୂଲ୍ୟାନନ୍ଦ ଯୋଗଜନ୍ମା ଅବତରଣ କରୁଛନ୍ତି।

ନିଜେ ରାଜ୍ୟର ମୁଖ୍ୟ ଶାସନସଚିବ ପୁଷ୍ପମାଲ୍ୟ ହସ୍ତରେ ଅଭ୍ୟର୍ଥନା ଜଣାଉଛନ୍ତି। ଭକ୍ତଗଣଙ୍କର ବହୁ ବର୍ଣ୍ଣର ପୁଷ୍ପମାଲ୍ୟରେ ଆବକ୍ଷ ବିଭୂଷିତ ଯୋଗଜନ୍ମାଙ୍କର ଚନ୍ଦ୍ରନିନ୍ଦିତ ଉଜ୍ଜ୍ୱଳ ମୁଖଟି ସରସୀ ଜଳରେ ପ୍ରସ୍ଫୁଟିତ ପଦ୍ମ ସଦୃଶ ସତେଜ ମନେ ହେଉଥିଲା।

ଭକ୍ତଙ୍କ ଗହଣରେ ବାବା ଅମୂଲ୍ୟାନନ୍ଦ ବିରାଜମାନ କରୁଛନ୍ତି। ମତ୍ତହସ୍ତୀ ପରି ଝୁଲି ଝୁଲି ଚାଲିଛନ୍ତି ସେ। ତାଙ୍କ ପାଇଁ ବନ୍ଦୋବସ୍ତ ହୋଇଛି ସୁସଜ୍ଜିତ ମୋଟରଗାଡ଼ି। ଭକ୍ତଗଣଙ୍କ ଜୟଜୟକାର ତଥା ମହିଳା ଭକ୍ତମାନଙ୍କର ଶଂଖ, ହୁଳହୁଳି ଧ୍ୱନିରେ ଏକ ଆନନ୍ଦମୁଖର ଅପରାହ୍ଣ ଉପସ୍ଥିତ ହୋଇଛି।

ଆଗପଛ ହୋଇ ଚାଲିଛି ପ୍ରାୟ ଏକଶତ ମୋଟରଗାଡ଼ି। ବାବାଙ୍କ ଗାଡ଼ି

ସାମନାରେ ଚାଲିଥିବା ଆଉ ଏକ ଖୋଲା ଜିପ୍‌ରେ ଥିଲେ ନାମସଂକୀର୍ତ୍ତନର ଦଳ। ପଶ୍ଚାତରେ ତାଙ୍କୁ ଅନୁସରଣ କରୁଥିଲେ ଏ ସହର ତଥା ରାଜ୍ୟର ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ଯୋଗଇନ୍ଦ୍ରାଙ୍କର ପରମ ଭକ୍ତମଣ୍ଡଳୀ।

ସହରର କେତେକ ରାସ୍ତାରେ ତୋରଣମାନ ସଜା ଯାଇଛି ଏହି ମହାନ୍ ବ୍ୟକ୍ତିଙ୍କ ସମ୍ମାନାର୍ଥେ। ବିହ୍ୱଳ ନେତ୍ରରେ ସାଧୁ ଅମୂଲ୍ୟାନନ୍ଦ ଅବଲୋକନ କରୁଛନ୍ତି ତାଙ୍କର ସ୍ୱାଗତ ସମ୍ବର୍ଦ୍ଧନା ଉପଲକ୍ଷେ ସୁସଜ୍ଜିତ ସହରଟିର ଅପରୂପ ଶୋଭା।

ସ୍ଥାନୀୟ ସ୍ୱର୍ଣ୍ଣଚୂଡ଼ ବିଷ୍ଣୁ ମନ୍ଦିରରେ ସାଧୁବାବାଙ୍କ ଅବସ୍ଥାନ ପାଇଁ ସମସ୍ତ ସୁବ୍ୟବସ୍ଥା କରାଇଛନ୍ତି ନିଜେ ପରମଭକ୍ତ ମୁଖ୍ୟ ବିଚାରପତି ମହୋଦୟ।

ବିରାଟ ଏକ ହଲ ସଦୃଶ ପ୍ରକୋଷ୍ଠଟିର ମେହଗାନି କାଷ୍ଠ ନିର୍ମିତ ମୂଲ୍ୟବାନ ପଲ୍ୟଙ୍କରେ ସୁକୋମଳ ଶଯ୍ୟା ପ୍ରସ୍ତୁତ କରାଯାଇଛି। ଚାରିଗୋଟି ଦୀର୍ଘ ଅଥଚ ଗୋଲାକୃତି କୋମଳ ତକିଆ ଯୋଗଇନ୍ଦ୍ରାଙ୍କର ସ୍ୱାଚ୍ଛନ୍ଦ୍ୟ ନିମିତ୍ତ ରଖାଯାଇଛି। ଚନ୍ଦନକାଷ୍ଠର ଏକ କ୍ଷୁଦ୍ର ଗୋଲାକୃତି ମେଜ ଉପରେ ଫୁଲଦାନୀରେ ସଜା ହୋଇଛି ବିଭିନ୍ନ ରଙ୍ଗର ଗୋଲାପର ଏକ ପୁଷ୍ପଗୁଚ୍ଛ।

ଧୂପ, ଚନ୍ଦନ, ଅଗୁରୁର ମହକ, ବହୁ ସୁଗନ୍ଧଯୁକ୍ତ ପୁଷ୍ପର ଏକ ମିଶ୍ରିତ ବାସ୍ନା ଯୋଗଇନ୍ଦ୍ରାଙ୍କର ଆବିର୍ଭାବର ସଙ୍କେତ ଦେଉଥାଏ। କକ୍ଷଟିର ସମସ୍ତ ଚଟାଣ ମୂଲ୍ୟବାନ କାଶ୍ମୀର କାର୍ପେଟ୍ ଦ୍ୱାରା ଆଚ୍ଛାଦିତ। ଲାଲ, ନୀଳ, ସବୁଜ ବିଜୁଳିବତୀର ମୃଦୁ ଆଲୋକ ପ୍ରକୋଷ୍ଠଟିରେ ଶାନ୍ତ ସ୍ନିଗ୍ଧ ପରିବେଶ ସୃଷ୍ଟି କରିଥିଲା। ଟେପ୍ ରେକର୍ଡ଼ର୍‌ରେ ଭକ୍ତମାନଙ୍କର ମୃଦୁ ସୁଲଳିତ କଣ୍ଠରେ ବାବା ଅମୂଲ୍ୟାନନ୍ଦଙ୍କ ଲିଖିତ ଭଜନାବଳୀ ସେଇ କକ୍ଷଟିରେ ଅନୁରଣିତ ହୋଇ ଅସ୍ଥିର ଅଶାନ୍ତ ଚିତ୍ତରେ ସୃଷ୍ଟି କରୁଥିଲା ଭାବାନ୍ତର।

ସୁସଜ୍ଜିତ ମନ୍ଦିରର ଦ୍ୱାରଦେଶରେ ଭକ୍ତଗଣଙ୍କ ସହ ମୋଟରଗାଡ଼ିରୁ ଧୀରେ ଓହ୍ଲାଇ ଆସିଲେ ସାଧୁ ଅମୂଲ୍ୟାନନ୍ଦ। ପୁନର୍ବାର ଶଂଖହୁଳହୁଳି, ପୁଷ୍ପବୃଷ୍ଟି। ଏୟାର୍‌ପୋର୍ଟ ଯାଇପାରି ନ ଥିବା ବହୁସଂଖ୍ୟକ ଭକ୍ତ ତାଙ୍କୁ ଘେରି ରହିଛନ୍ତି ମନ୍ଦିରର ଦ୍ୱାରଦେଶରେ। ସେମାନେ ତାଙ୍କୁ ପାଛୋଟି ନେଲେ।

ବାବାଙ୍କର ଶୟନକକ୍ଷ ସାମନାର ଅଗଣଟି ଅନ୍ୟ ଦିନରେ ଶୂନ୍ୟଥାଏ ଅଥଚ ସେଦିନ ସେଠାରେ ମଲ୍ଲୀ, ଗୋଲାପ, ରଜନୀଗନ୍ଧା, ଜିନିଆ, ଡ଼ାଲିଆ ଇତ୍ୟାଦି ଦେଶୀ ବିଦେଶୀ ପୁଷ୍ପକୁଣ୍ଡ ସବୁ ରଖାଯାଇ ଏକ କୃତ୍ରିମ କୁସୁମବାଟିକା

ସୃଷ୍ଟି କରାଯାଇଥାଏ ।

ବାବାଙ୍କର ପଦ୍ମପାଦଦ୍ୱୟ ସୁବାସିତ ଜଳରେ ଧୌତ କରି ବିଶିଷ୍ଟ ଭକ୍ତ ଜଣେ ତାଙ୍କ ନିମିର ଉଦ୍ଦିଷ୍ଟ ପ୍ରକୋଷ୍ଠରେ ବିଶ୍ରାମ ନେବାକୁ ଅନୁରୋଧ ଜଣାଇଲେ । ବିଷ୍ଣୁ ମନ୍ଦିରର ପରମ ପୂଜନୀୟ ମୁଖ୍ୟ ମହନ୍ତ ମହାରାଜ ଭକ୍ତଗଣଙ୍କୁ ଅନୁରୋଧ ଜଣାଇଲେ, "ଆପଣମାନେ ଆଉ କଷ୍ଟ କରନ୍ତୁ ନାହିଁ। ବାବା ଯୋଗଚନ୍ଦ୍ର ଏବେ ଶୌଚ, ସ୍ନାନାଦି ସମାପନ ପୂର୍ବକ ସନ୍ଧ୍ୟା ସାତଟା ସମୟରେ ସାନ୍ଧ୍ୟପ୍ରାର୍ଥନା ପାଇଁ ଆପଣମାନଙ୍କୁ ଆହ୍ୱାନ ଜଣାଇବେ ।"

କିଏ ଜଣେ ଭକ୍ତ ସେଇ ଏକା ଭାବ ବ୍ୟକ୍ତ କଲେ, "ଚାଲନ୍ତୁ, ଏବେ ଘରକୁ ଯିବା। ବାବାଙ୍କ ପାଖରେ ସର୍ବଦା ଗହଳି ଠିକ୍ ନୁହେଁ। ଆମ୍ଭେମାନେ ମଧ୍ୟ ସାନ୍ଧ୍ୟକର୍ମ ସମାପନ କରି ସାତଟା ସୁଦ୍ଧା ଉପସ୍ଥିତ ହେଲେ ଚଳିବ ।"

ଅନିନ୍ଦ୍ୟ ରୂପବତୀ ତରୁଣୀ ଭକ୍ତ ଜଣେ ରୌପ୍ୟ ଟ୍ରେ ଏବଂ ତନ୍ମଧ୍ୟରେ ଏକ ସୁଦୃଶ୍ୟ ରୌପ୍ୟ ପାତ୍ରରେ ପ୍ରଭୁ ବିଷ୍ଣୁଙ୍କର ପାଦୁକ, ପ୍ରସାଦ ମିଶ୍ରିତ ସୁମିଷ୍ଟ ସରବତ୍ ବାବାଙ୍କୁ ଅର୍ପଣ କଲେ ।

ବାବା ସହାସ୍ୟ ବଦନରେ ଆଶୀର୍ବାଦ ଜଣାଇ କନ୍ୟାଟିର ମସ୍ତକରେ ହସ୍ତ ସଞ୍ଚାଳନପୂର୍ବକ ସରବତ୍ ଗ୍ଲାସ୍‌ଟି ଉଠାଇ ନେଲେ ।

ଭକ୍ତଗଣ ନିଷ୍କ୍ରାନ୍ତ ହୋଇଛନ୍ତି ପ୍ରକୋଷ୍ଠ ମଧ୍ୟରୁ। ଏକମାତ୍ର ଋଷିକେଶରୁ ତାଙ୍କ ସାଥିରେ ଆସିଥିବା ଶିଷ୍ୟ ଭୁବନାନନ୍ଦ ବାବାଙ୍କ ଆଦେଶ ପାଇଁ ଅପେକ୍ଷା କରିଛନ୍ତି ।

ଅମୂଲ୍ୟାନନ୍ଦ ଅନ୍ୟମନସ୍କ, ଚିନ୍ତାଗ୍ରସ୍ତ। ସମ୍ଭବତଃ ସେ ପଥଶ୍ରାନ୍ତ, କ୍ଲାନ୍ତ। ପରମ ଶିଷ୍ୟ ଭୁବନକୁ ପାଖକୁ ଡ଼ାକାଇ ସେ ନିଜର ଅଭିଳାଷ ବ୍ୟକ୍ତ କଲେ ।

ଏ ସହରର ଶେଷ ପ୍ରାନ୍ତରେ ପାହାଡ଼, ଝରଣା ପରିବେଷ୍ଟିତ ଏକ ଶାନ୍ତ ପରିବେଶରେ ଅମୃତରାଜଙ୍କର ଆଶ୍ରମ। ତାଙ୍କୁ ହିଁ ଏକାନ୍ତରେ ସାକ୍ଷାତ କରିବାକୁ ଯିବେ ବାବା ଅମୂଲ୍ୟାନନ୍ଦ। ସାଥିରେ ଶିଷ୍ୟ ଭୁବନକୁ ନେବାକୁ ମଧ୍ୟ ବାରଣ କଲେ ସେ ।

ଆହା, ବାବାଙ୍କର ଟିକିଏ ବି ଅହଂଭାବ ନାହିଁ। ଭକ୍ତମାନଙ୍କର ଏହି ସମସ୍ତ ବାହ୍ୟ ଆଡ଼ମ୍ବର, ଆୟୋଜନ ତାଙ୍କ ମନକୁ ସ୍ପର୍ଶ କରିପାରୁନାହିଁ। ସେ ତ ଅତିମାନବ ।

ଏ ପର୍ଯ୍ୟନ୍ତ ଘରକୁ ଫେରିଯାଇ ନ ଥିବା କେତେକ ଶିଷ୍ୟ ଏଭଳକି କଥାବାର୍ତ୍ତା କରୁଥିଲେ।

କେଉଁ ଏକ ଭକ୍ତ ନିକଟରେ ବିଦେଶରୁ ଅଣାଇଥିବା ନିଜର ସୌଖୀନ୍ ଟୟୋଟା କାର୍‌ଟି ବାବାଙ୍କ ସ୍ୱଚ୍ଛ ରହଣୀ ମଧ୍ୟରେ କେବଳ ତାଙ୍କର ବ୍ୟବହାର ପାଇଁ ରଖି ଯାଇଛନ୍ତି।

ଡ୍ରାଇଭର୍ ପ୍ରଣତି ଜଣାଇ କାର୍‌ର ପଛଦ୍ୱାର ସସମ୍ମାନ ଖୋଲି ଧରିଲା। ଗୈରିକବସ୍ତ୍ର ପରିହିତ ବାବା ଅମୂଲ୍ୟାନନ୍ଦ ଯୋଗଜନ୍ମାଙ୍କ ମାନସପଟରୁ ସମସ୍ତ ଦୁଶ୍ଚିନ୍ତା ଅପସରି ଯାଇ ଶୋଭାପାଉଥିଲା ନିର୍ଲିପ୍ତ ମଧୁର ହାସ୍ୟ। ଧୀରେ ଗାଡ଼ି ମଧ୍ୟରେ ଆସନ ଗ୍ରହଣ କରି ସେ ଡ୍ରାଇଭରକୁ ନିର୍ଦ୍ଦେ ଦେଲେ-

"ଚଲୋ ଯାର୍ !"

ସୂର୍ଯ୍ୟ ପ୍ରାୟ ଅସ୍ତମିତ। ଅନ୍ୟ ପାଖରେ ଚନ୍ଦ୍ରୋଦୟର ମହୋତ୍ସବ। କିଛିକ୍ଷଣ ମଧ୍ୟରେ ପାହାଡ଼ ଉପରେ ଦେଖାଦେବ ପୂର୍ଣ୍ଣିମାର ଉଜ୍ଜ୍ୱଳ ଚନ୍ଦ୍ର। ଝରଣା ଜଳରେ ସ୍ନାନ ସମାପନ କରି ଫେରି ଆସୁଥିଲେ ଅମୃତରାଜ୍।

ଆଶ୍ରମ ପାଖରେ କେହି ଦେଖା ଯାଉନାହାନ୍ତି। ଅଦୂରରେ ଝରଣା କୂଳରୁ ଆଶ୍ରମ ଆଡ଼କୁ ଫେରି ଆସୁଥିବା ଅମୃତରାଜ୍‌ଙ୍କୁ ବେଶ୍ ଚିହ୍ନି ପାରିଥିଲେ ଅମୂଲ୍ୟାନନ୍ଦ।

କାର୍‌ରୁ ଓହ୍ଲାଇ ସେହି ଦିଗକୁ ଦ୍ରୁତ ପଦକ୍ଷେପରେ ଆଗେଇବାରେ ଲାଗିଲେ ସେ।

ଅମୃତରାଜ୍ ପ୍ରସ୍ତର ମୂର୍ତ୍ତି ପରି ଠିଆହୋଇ ରହି ଗମ୍ଭୀର ଦୃଷ୍ଟିରେ ଚାହିଁ ରହିଥିଲେ ବାବା ଅମୂଲ୍ୟାନନ୍ଦଙ୍କୁ।

ଅମୂଲ୍ୟାନନ୍ଦ ତାଙ୍କ ପାଦସ୍ପର୍ଶ କରି କହିଲେ, "ଗୁରୁଦେବ, ଆପଣଙ୍କ ଦର୍ଶନାଭିଳାଷୀ ହୋଇ ସୁଦୂର ଋଷିକେଶରୁ ମୁଁ ଧାଇଁଆସିଛି। ମୋର ନୟନଯୁଗଳ ସାର୍ଥକ ହେଲା।"

ଅମୃତରାଜ୍ ଶୂନ୍ୟଦୃଷ୍ଟିରେ ତଥାପି ତାଙ୍କୁ ଚାହିଁ ରହିଥିଲେ। ଶିଷ୍ୟ ଅମୂଲ୍ୟଙ୍କୁ ଆଶୀର୍ବାଦ ଦେବାକୁ ସେ ହସ୍ତ ସଂଚାରଣ କରି ପାରି ନ ଥିଲେ। ତଥାପି ନିଜକୁ ସଂବରଣ କରି ଅମୃତରାଜ୍ କହିଲେ, "ବତ୍ସ, ତୁମର ସବୁ କୁଶଳ ତ ?"

"ଗୁରୁଦେବ, ଆପଣଙ୍କ ଦୟାରେ....।"

"ନା ନା, ମୋ ଦୟା କାହିଁକି କହୁଛ? ତୁମେ ଏବେ ସେଦିନର ସେଇ ଅମୂଲ୍ୟ ନୁହଁ। ତୁମେ ଆଜି ଯୋଗଜନ୍ମା ବାବା ଅମୂଲ୍ୟାନନ୍ଦ। ତୁମ୍ଭର ଭକ୍ତମାନଙ୍କର ଉଚ୍ଛ୍ୱସିତ ସମ୍ବର୍ଦ୍ଧନାର ବିଶଦ ବିବରଣୀ ମୋର ଶିଷ୍ୟମାନଙ୍କଠାରୁ ଶୁଣିଛି।"

"ଗୁରୁଦେବ....।"

"ହଁ ବତ୍ସ, ସେ ତୁମର ଭାଗ୍ୟ। ଅମୃତରାଜ୍‌ଙ୍କର ସେ ଭାଗ୍ୟ କାହିଁ?"

ଅମୃତରାଜ୍‌ଙ୍କ ଶୁଷ୍କ ମଳିନ ମୁଖରେ ସେଇ ନିର୍ଲିପ୍ତ ହାସ୍ୟ, ଅନ୍ତରଥରା ଦୀର୍ଘଶ୍ୱାସ ଅମୂଲ୍ୟାନନ୍ଦଙ୍କର ହୃଦୟ ଥରାଇ ଦେଲା। ପୁନଶ୍ଚ ଦୁଶ୍ଚିନ୍ତାର ଛାୟା ଫୁଟି ଉଠିଲା ମୁଖମଣ୍ଡଳରେ। ତାହା କିନ୍ତୁ ଅମୃତରାଜଙ୍କ ଦୃଷ୍ଟିରୁ ବାଦ୍ ଯାଇ ନ ଥିଲା।

ଅମୃତରାଜ୍‌ଙ୍କ ଓଠରେ ସେଇଭଳି ସ୍ମିତ ହାସ୍ୟର ଝଲକ।

ଅମୂଲ୍ୟାନନ୍ଦ ଶୁଷ୍କପତ୍ର ପରି ଥରି ଉଠି ପୂନର୍ବାର ତାଙ୍କର ପଦ ସ୍ପର୍ଶ କରି କହିଲେ, "ଗୁରୁଦେବ, ଆପଣ ମୋର ରକ୍ଷାକର୍ତ୍ତା। ଏ ଅଧମକୁ କ୍ଷମା କରନ୍ତୁ, ପ୍ରଭୁ। ଦୟାକରି ଏ ସହରରେ ମୋର ପରିଚୟ ବୃତ୍ତାନ୍ତ କାହାରିକୁ ଜଣାଇବେ ନାହିଁ। କଥା ଦିଅନ୍ତୁ, ଗୁରୁଦେବ?"

"ଉଠ ବତ୍ସ, ଅମୃତରାଜ୍‌କୁ ଏଭଳି ନୀଚସ୍ତରକୁ ଓହ୍ଲାଇ ନେଉଛ କାହିଁକି? ତୁମ୍ଭେ ନିଶ୍ଚିନ୍ତରେ ରୁହ। ତୁମ ସଂପର୍କରେ ମୁଁ କେଉଁଠି ମୁହଁ ଖୋଲିବି ନାହିଁ।"

ଫେରି ଯାଇଥିଲେ ଅମୂଲ୍ୟାନନ୍ଦ। ଭକ୍ତମାନେ ଆସିବା ପୂର୍ବରୁ ନିଜକୁ ପ୍ରସ୍ତୁତ କରିନେବାକୁ ହେବ। ସଂଧ୍ୟା ପ୍ରାର୍ଥନା ପରେ ସେ ଗୀତା ପ୍ରବଚନ ଦେବେ। ଅମୃତରାଜ୍‌ଙ୍କ ପାଖରେ କ୍ଷମା ଭିକ୍ଷା କରି ସେ ବିଦାୟ ନେଇଥିଲେ।

ତାଙ୍କର ପ୍ରସ୍ଥାନ ପଥକୁ କ୍ଳାନ୍ତ ଦୃଷ୍ଟିରେ ଚାହିଁ ରହିଥିଲେ ଅମୃତରାଜ୍।

ସୂର୍ଯ୍ୟ ଅସ୍ତମିତ। ଧୀରେ ଅନ୍ଧାର ନଇଁ ଆସୁଛି। ପୂର୍ଣ୍ଣିମା ଚନ୍ଦ୍ରର ସୌନ୍ଦର୍ଯ୍ୟ ବିଚ୍ଛୁରିତ। ଅମୃତରାଜ ନିଜକୁ ପ୍ରଶ୍ନ କଲେ, ଏ ଚନ୍ଦ୍ର କଣ ଅମୂଲ୍ୟାନନ୍ଦ? ଆଉ ସେ ନିଜେ? ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଜ୍ୟୋତ୍ସ୍ନାସିକ୍ତ ରାତ୍ରିର ସୌନ୍ଦର୍ଯ୍ୟ ବା କାହିଁ? କିନ୍ତୁ ସେ ଯେ ଅସ୍ତମିତ ସୂର୍ଯ୍ୟ!

ସାନ୍ଧ୍ୟପୂଜା, ପ୍ରାର୍ଥନା, ଧ୍ୟାନ କେଉଁ କାର୍ଯ୍ୟରେ ମନ ଲଗାଇ ପାରିଲେ

ନାହିଁ ଅମୃତରାଜ୍‌। ସ୍ୱ-ପ୍ରକୋଷ୍ଠରେ ଭାରାକ୍ରାନ୍ତ ମନ ନେଇ ବସି ରହିଛନ୍ତି ସେ। ଅନେକ ଦୂରରୁ ମାଇକ୍‌ରେ ସ୍ୱର୍ଣ୍ଣଚୂଡ଼ ବିଷ୍ଣୁ ମନ୍ଦିରରେ ଗୀତା ପ୍ରବଚନ ଦେଉଥିବା ଅମୂଲ୍ୟାନନ୍ଦଙ୍କ ସ୍ୱର ତଥାପି ସେ ସ୍ପଷ୍ଟ ଶୁଣି ପାରୁଥିଲେ।

ଧୀରେ ଫେରିଗଲେ ସେ କେତେବର୍ଷ ତଳକୁ। ସେତେବେଳେ କିଶୋର ଅମୃତ ବାରମ୍ବାର ପାଠରେ ଅକୃତକାର୍ଯ୍ୟ ହୋଇ ଘରେ ବସି ଥାଆନ୍ତି। ଏଣେ ଦରିଦ୍ର ପିତାମାତାଙ୍କର ତାଡ଼ନା। ସେହି ସମୟରେ ତାଙ୍କ ଗାଁକୁ ଆସିଥିଲେ ହିମାଳୟ ନିକଟରୁ ଜଣେ ସାଧୁ। ତାଙ୍କରି ଶିଷ୍ୟତ୍ୱ ଗ୍ରହଣ କରି ଋଷିକେଶ ଯିବାପାଇଁ ସେ ଇଚ୍ଛା ପ୍ରକାଶ କଲେ। ବାପା, ମା' ମଧ୍ୟ ନିଜର ସମ୍ମତି ଦେଇଥିଲେ।

ଅମୃତରାଜ୍‌ଙ୍କଠାରେ ଦେଖାଗଲା ଅଭୂତପୂର୍ବ ଏକ ପରିବର୍ତ୍ତନ। ଋଷିକେଶ୍‌ ଆଶ୍ରମର ପରିବେଶରେ ସେ ନିଜକୁ ଅନ୍ୟ ଜଣେ କରି ଆବିଷ୍କାର କଲେ। ପ୍ରତ୍ୟହ ଧ୍ୟାନ, ଯୋଗ, ଶାସ୍ତ୍ରାଦି ପଠନ, ଆଲୋଚନାରେ ଜୀବନର ଅନ୍ୟ ଏକ ଦିଗ ଉନ୍ମୋଚିତ ହେଲା।

ସେହି ଆଶ୍ରମର ରନ୍ଧନ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ ଅମୂଲ୍ୟ। ଆଶ୍ରମବାସୀଙ୍କୁ ରାନ୍ଧି ପରଶିବାରେ ତାଙ୍କର ସମସ୍ତ ସମୟ ବ୍ୟୟ ହେଉଥିଲା। ସେଇ କାର୍ଯ୍ୟ ପାଇଁ ପାଉଥିବା ଯତ୍‌ସାମାନ୍ୟ ଅର୍ଥରେ ସେ ସୁଦୂର ଗ୍ରାମରେ ଥିବା ବିଧବା ମା', ଭାଇ ଭଉଣୀ ଦୁଇଟିକୁ କୌଣସି ପ୍ରକାରେ ଚଳାଇ ପାରୁଥିଲେ।

ପ୍ରାୟ ପ୍ରତ୍ୟେକ ରାତ୍ରିରେ ଆଶ୍ରମର କାର୍ଯ୍ୟ ସମାପନ ପରେ ତାଙ୍କ ନିକଟକୁ ଆସି ଅମୂଲ୍ୟ ଅନୁରୋଧ କରନ୍ତି ଟିକିଏ ଗୀତା ପଢ଼ାଇ ଦେବାକୁ। ଅମୃତରାଜ ବିଶ୍ରାମ ନେବାକୁ ଯାଉଥିଲେ ମଧ୍ୟ ରାନ୍ଧୁଣିଆ ଅମୂଲ୍ୟର ଆଗ୍ରହ ଭାଙ୍ଗି ପାରନ୍ତି ନାହିଁ।

ଅମୂଲ୍ୟ ଅନ୍ୟ କିଛି ପଢ଼ିପାରେ ନାହିଁ। ଆଶ୍ରମର ଶିକ୍ଷାର୍ଥୀମାନଙ୍କ ପାଖରେ ବାରମ୍ବାର ଗୀତା ପାଠ କରି ତାର ଭାବାର୍ଥ କୌଣସି ପ୍ରକାରେ କିଛିଟା ଆୟତ୍ତ କରି ସେ ଆଜି ବାବା ଅମୂଲ୍ୟାନନ୍ଦ ଯୋଗଜନ୍ମା।

ଅଥଚ ବହୁ ସମୟ ବ୍ୟୟ କରି ଆଶ୍ରମର କଠୋର ଶୃଙ୍ଖଳା ମଧ୍ୟରେ ଜୀବନର ମୂଲ୍ୟବାନ ସମୟ ବିତାଇ ଏତେସବୁ ଶାସ୍ତ୍ର ଅଧ୍ୟୟନ, ଯୋଗଶିକ୍ଷା- ଏ ସବୁର ମୂଲ୍ୟ କେଉଁଠି ରହିଲା? ଆଜି ଯଦି ସେ ସ୍ୱଭାଷାଭାଷୀ ଏ

ସହରକୁ ପ୍ରତ୍ୟାବର୍ତ୍ତନ କରି ନ ଥାନ୍ତେ ଏବଂ ଅମୂଲ୍ୟ ଭଳି ନିଜର ପ୍ରଚାର ଶିଷ୍ୟମାନଙ୍କ ଦ୍ୱାରା ସହରରେ କରାଇ ପାରିଥାଆନ୍ତେ, ହୁଏତ ସମସ୍ତଙ୍କ ପାଖରେ ତାଙ୍କର ପରିଚୟ ହୋଇଥାଆନ୍ତା ପରମହଂସ ବାବା ଅମୃତରାଜ୍ ଯୋଗଜନ୍ମା ଇତ୍ୟାଦି ଇତ୍ୟାଦି।

କୃଚ୍ଛ୍ରସାଧନା କରି ସେ କିଛି ପାଇଲେ ନାହିଁ। କ୍ଷୁଦ୍ର ଏହି ଆଶ୍ରମ, ସ୍ୱଳ୍ପ କେତେଜଣ ଦରିଦ୍ର ଶିଷ୍ୟ। ବିଭିନ୍ନ ଉତ୍ସବରେ ପୂଜା ଅର୍ଚ୍ଚନା, ନିଜର ଦୈନନ୍ଦିନ ପ୍ରୟୋଜନାର୍ଥେ ସାମାନ୍ୟ କିଛି ଅର୍ଥଭିକ୍ଷା କରି ସେ ଚଳି ଯାଉଛନ୍ତି। ତାଙ୍କର ଭାଗ୍ୟହୀନ ପିତା ମାତାଙ୍କୁ ମୁହଁ ଦେଖାଇବାକୁ ସେ କେବେ ବି ଯାଇ ପାରି ନାହାନ୍ତି। ତାଙ୍କ ପାଖରେ ଅର୍ଥ କିମ୍ୱା ସମ୍ମାନ କିଛିଟା ହିଁ ନାହିଁ।

ଅମୂଲ୍ୟର ମା', ଭାଇ ଭଉଣୀମାନେ ସୁଖର ଐଶ୍ୱର୍ଯ୍ୟ ଭୋଗ କରୁଛନ୍ତି। ନିଜର ସୁଠାମ ଗୌରବର୍ଣ୍ଣର ଉଜ୍ଜ୍ୱଳ ବାହ୍ୟସୌନ୍ଦର୍ଯ୍ୟ, ଗୀତାତତ୍ତ୍ୱ ବୁଝାଇବା, ଭଜନ ଗାଇବା ପାଇଁ ସୁଲଳିତ ସ୍ୱରରେ ସେ ତାର ଶିଷ୍ୟମାନଙ୍କୁ ସମ୍ମୋହିତ କରୁଛି।

ଅମୃତରାଜ୍ ଅନ୍ଧାରରେ ନିଜର ଦୀର୍ଘଶ୍ୱାସର ସ୍ୱର ଶୁଣି ପାରିଲେ। ସେ ପାଖରୁ ମାଇକ୍‌ରେ ବାବା ଅମୂଲ୍ୟାନନ୍ଦଙ୍କର ପ୍ରବଚନ ଧୀରେ ସ୍ପଷ୍ଟ ଶୁଣାଯାଉଛି।

''ବସ୍ତୁବାଦୀ ସଂସାରର ମାୟାମୋହ ତ୍ୟାଗ କରି ତୁମେ ମୋର ଶରଣାପନ୍ନ ହୁଅ।''

ଅମୃତରାଜ୍‌ଙ୍କର ଇଚ୍ଛା ହେଲା, ଅମୂଲ୍ୟକୁ ପଚାରିବେ, ''ତୁମେ ସେମାନଙ୍କୁ ପ୍ରତାରିତ କରୁଛ କାହିଁକି? ମୁଁ କ'ଣ ତୁମକୁ ଏହି ଶିକ୍ଷା ଦେଇଥିଲି?''

ଆଶ୍ରମର ଦ୍ୱାର ଖୋଲି ନିଃଶବ୍ଦରେ ସେ ବାହାରି ଚାଲିଗଲେ।

ପରଦିନ ସନ୍ଧ୍ୟା...

ପ୍ରଖ୍ୟାତ ସ୍ୱର୍ଣ୍ଣଚୂଡ଼ ବିଷ୍ଣୁ ମନ୍ଦିର ପ୍ରାଙ୍ଗଣ ଲୋକାରଣ୍ୟ। ଶୁକ୍ଳପକ୍ଷର ଏକ ଚନ୍ଦ୍ରାୟିତ ରାତ୍ରି। ସଦ୍ୟନିର୍ମିତ ମନ୍ଦିରଟି ଆଲୋକ ସଜ୍ଜାରେ ଅପରୂପଶୋଭା ଧାରଣ କରିଛି। ନାମଯଜ୍ଞ, ପବିତ୍ର ଗୀତାପାଠ ଚାଲିଛି। ମଧ୍ୟେ ମଧ୍ୟେ ସମବେତ ଭକ୍ତବୃନ୍ଦଙ୍କ ଭକ୍ତିପୂତ ଆନନ୍ଦ ଉଲ୍ଲାସ ଘ୍ରାଣ ମନରେ ମଧ୍ୟ ସୃଷ୍ଟି କରୁଛି ଅପୂର୍ବ ଉନ୍ମାଦନା।

ସାଧୁ ଅମୂଲ୍ୟାନନ୍ଦ ଯୋଗଜନ୍ମା ତନ୍ମୟ ଭାବରେ ବୁଝାଇ ଚାଲିଛନ୍ତି ଗୀତାର ସାରତତ୍ତ୍ୱ। ସତେକି କଣ୍ଠରୁ ଝରୁଛି ସୁଧାବାରି। ସେ ଶବ୍ଦଅମୃତ ସୁଧୀ ଭକ୍ତବୃନ୍ଦଙ୍କୁ ଅତୀନ୍ଦ୍ରିୟ ରାଜ୍ୟକୁ ନେଇ ତନ୍ଦ୍ରାଚ୍ଛନ୍ନ କରୁଥିଲା।

ଭକ୍ତ ଚାଲିଛନ୍ତି। ବାବାଙ୍କ କଣ୍ଠଦେଶରେ ସୁବାସିତ ପୁଷ୍ପମାଲ୍ୟ ଲମ୍ବାଇଦେଇ ଆଭୂମ ପ୍ରଣାମ କରୁଛନ୍ତି ସେମାନେ। କେହି କେହି ହୁଏତ ପିନ୍ଧାଇଛନ୍ତି ମଣି ମୁକ୍ତାର ମାଳ। ବାବା ଅମୂଲ୍ୟାନନ୍ଦ ଆଗକୁ ଝୁଙ୍କି ଆସିବାବେଳେ ବିଜୁଳି ଆଲୋକରେ ତନ୍ମଧ୍ୟରେ ଥିବା ପଥର ଗୁଡ଼ିକ ଝଟକି ଉଠୁଛି। ପାଖରେ ଏକ ରୌପ୍ୟଥାଳିରେ ଭକ୍ତଜନଙ୍କର ଉପହାର କେତେକ ମୁଦ୍ରା ଏବଂ କିଛି ଶହେଟଙ୍କାର ନୋଟ୍ ସ୍ତୂପାକାର ଧାରଣ କରିଥିଲା।

ବାବାଙ୍କର ନିରଳସ ସୁମଧୁର ସ୍ୱର ମାଇକ୍‌ରେ ଚତୁର୍ଦ୍ଦିଗ ଝଂକୃତ କରୁଥିଲା- "ଅର୍ଥ, ପତିପରି, ସନ୍ତାନ ପ୍ରତି ଆସକ୍ତ ହୁଅନାହିଁ, ବସ୍! କେବଳ କର୍ତ୍ତବ୍ୟ କରିଯାଅ।"

ବିଳମ୍ବ ରାତ୍ରି। ଉତ୍ସବ ସମାପନ ପରେ ବାବା ଅମୂଲ୍ୟାନନ୍ଦ ଯୋଗଜନ୍ମା କ୍ଳାନ୍ତ ହୋଇ ବାହାରି ଆସିଥିଲେ ମୁକ୍ତ ଆକାଶ ତଳକୁ।

ଅଦୂରରେ ଅନ୍ଧାରରେ କେହି ଏକ ଛାୟାମୂର୍ତ୍ତି। ଅମୂଲ୍ୟାନନ୍ଦଙ୍କ ଦୃଷ୍ଟି ପ୍ରସାରିତ ହୁଅନ୍ତେ, ସେ ପଚାରିଲେ, "କିଏ ତୁମେ ବାବା?"

ମୂର୍ତ୍ତିଟି ଉତ୍ତର ନ ଦେବାରୁ ଅମୂଲ୍ୟାନନ୍ଦ ଆଉ ଟିକେ ପାଖକୁ ଆଗେଇ ଯାଇ ସାମାନ୍ୟ ଆଲୋକରେ ତାଙ୍କୁ ନିରୀକ୍ଷଣ କରି ବାକ୍‌ଶୂନ୍ୟ ହୋଇ ରହିଗଲେ।

"ଗୁରୁଦେବ, ଆପଣ ଏଠି ଏତେ ରାତିରେ?"

ଛାୟା ମୂର୍ତ୍ତିଟି କୌଣସି ଉତ୍ତର ନ ଦେଇ ନିକଟସ୍ଥ ପ୍ରାୟାନ୍ଧକାର ଗଳି ରାସ୍ତାରେ ଦ୍ରୁତ ପଦକ୍ଷେପରେ ଚାଲିବାରେ ଲାଗିଥିଲା।

ଅନେକ ସମୟ ପର୍ଯ୍ୟନ୍ତ ସେହି ଦିଗକୁ ଆତଙ୍କିତ ଦୃଷ୍ଟିରେ ଚାହିଁ ରହିଥିଲେ ବାବା ଅମୂଲ୍ୟାନନ୍ଦ ଯୋଗଜନ୍ମା। □ □ □

'ସୁଚରିତା', ପୂଜାସଂଖ୍ୟା, ୧୯୮୩

# ତରଙ୍ଗ

ବାହାର ବାରଣ୍ଡାରେ ଠିଆହୋଇ ଆକାଶକୁ ଚାହିଁ ଦେଖୁଥିଲା ଦୀପୁ। ପାଉଁଶିଆ ଆକାଶରେ ଭସା ବାଦଲର ଖେଳ ଚାଲିଛି। ଟିକିଏ ସମୟ ପରେ ହୁଏତ ବର୍ଷା ହେବ। ଏହି ବର୍ଷାରେ ବଲ୍ ଗଡ଼ାଇ ଖେଳିବାରେ ଥାଏ ଖୁବ୍ ମଜା। ସାମ୍ନାରେ ଥିବା ବଡ଼ ପଡ଼ିଆରେ ପ୍ରାୟ ସବୁଦିନ ଖେଳ ଚାଲେ। ଦୀପୁର ମନ ହୁଏ ସେମାନଙ୍କ ସାଙ୍ଗରେ ସେମିତି ଦୌଡ଼ାଦୌଡ଼ି କରି ଖେଳିବାକୁ। କିନ୍ତୁ ମାଉସୀର ସେଇ ବଡ଼ ବଡ଼ ଆଖି ଦୁଇଟା ତା' ପଛରେ ଧାଇଁ ଆସେ। ଯୁଆଡ଼େ ଚାହିଁଲେ ସତେ ଯେପରି ସେ ଆଖି କଥା କହେ, "ନା ଦୀପୁ, ତୁ ଫାଟକ ବାହାରକୁ ଯାଇ ପାରିବୁନି।"

ଦାଣ୍ଡ ପାହାଚରୁ ସାଇକେଲ ଗଡ଼ାଇ ଆସ୍ତେ ତଳକୁ ଓହ୍ଲାଇ ଆସିଲା ସେ। କିନ୍ତୁ ବାଦଲମାନେ କୁଆଡ଼େ ଗଲେ ? ନୀଳ ଆକାଶର ଚଟାଣକୁ ଧୋଇଧାଇ ଏମିତି ସଫା କଲା କିଏ ? ମୁଁ ଯାଉଛି ଆକାଶର ସେଇ ଚଟାଣ ଉପରେ ସାଇକେଲ ଚଳାଇବି।

ଫୁଲ ଉପରେ ପ୍ରଜାପତିଟିଏ ନୀରବରେ ବସି ତା' କଥା ଶୁଣୁଥିଲା। ତାକୁ ଚାହିଁ ଦୀପୁ ପଚାରିଲା, "ତୁମେ କ'ଣ କହୁଛ ? ମୁଁ ଯାଇ ପାରିବିନି ? ବେଶ୍, ମୁଁ ନିଶ୍ଚୟ ଯିବି। ଠିକ୍ ସେଇ ମହାକାଶଚାରୀଙ୍କ ପରି, ଆରେ ତୁମେ କୁଆଡ଼େ ଗଲ, ପ୍ରଜାପତି ?"

ଅନେକ ସମୟ ଧରି ଦୀପୁର ବକ୍ତବ୍ୟ ଶୁଣିବା ପାଇଁ ପ୍ରଜାପତିର ଧୈର୍ଯ୍ୟଚ୍ୟୁତି

ଘଟିଥିଲା ବୋଧହୁଏ। ସେଇ ଫୁଲରୁ ଉଡ଼ିଯାଇ ଦୂରରେ ଆଉ ଗୋଟିଏ ଗୋଲାପ ଉପରେ ବସି ରହିଲା ସେ। ଦୀପୁ ଦୌଡ଼ିଲା ତା' ପଛରେ। ହଠାତ୍ ପୁଣି ସ୍ଥିରହୋଇ ଠିଆହୋଇ ରହିଲା ସେ ଗୋଟିଏ ବଡ଼ ଗଛ ତଳେ। ଗଛରେ ଅନେକ ନାଲି ଫୁଲ, ଫୁଲ ଫାଙ୍କରେ ଗହଳିଆ ଶାଗୁଆ ପତ୍ର। ସେଇଠି ଦୋଳି ଖେଳୁଛି ଗୁଣ୍ଡୁଚି ମୂଷା। ଡ଼ାଳ ସବୁ ମୃଦୁ ପବନରେ ହଲୁଚି। ଦୁଇ ହାତରେ ସରୁ ଡ଼ାଳକୁ ଧରି ଧରି ଚାଲି ଯାଉଛି ସେ ଆହୁରି ଉପରକୁ। ଦୀପୁ ଏଥର ସାଇକେଲ ପାଖକୁ ଫେରି ଆସିଲା। ବଗିଚାରେ ଏ ପାଖରୁ ସେ ପାଖ ସାଇକେଲ୍ ଚଳାଇ ବୁଲିଲା ସେ।

ସିମେଣ୍ଟ ଚଟାଣର ଦୁଇ ପାଖରେ ଗୋଲାପ, ଡ଼ାଲିଆ ଫୁଲମାନେ ହସୁଛନ୍ତି। ଆହୁରି ଅନେକ ଫୁଲ।

କିଛି ଦୂରରେ ଦେଖା ଯାଉଛି ସୁବୀର ଦାଦାଙ୍କ ଘର। ତାଙ୍କ ପିଲାମାନେ ଆସି ପାଖ ପଡ଼ିଆରେ ଖେଳ ଆରମ୍ଭ କରିଛନ୍ତି। ସେ କିନ୍ତୁ ସେଠିକି ଯାଇ ପାରିବନି। ସେମାନଙ୍କ ସାଙ୍ଗରେ ଖେଳିବାକୁ ମା' ମନା କରିଛନ୍ତି।

ସୁବୀର ଦାଦା ବାପାଙ୍କ ଫ୍ୟାକ୍ଟରୀରେ କାମ କରନ୍ତି। ଡ୍ରାଇଭର କହୁଥିଲା ସେଦିନ ବାପା ସୁବୀର ଦାଦାଙ୍କୁ ଅଫିସ୍‌ରେ ଖୁବ୍ ଗାଳି ଦେଉଥିଲେ ଓ ସେ କୁଆଡ଼େ ବାପାଙ୍କ ଗାଳି ଶୁଣିବା ବେଳେ ନୀରବରେ ମୁଣ୍ଡ ନୁଆଇଁ ଠିଆ ହୋଇଥିଲେ। ଇସ୍, ବାପା କେଡ଼େ ରାଗୀ! ସେ ହେଉଛନ୍ତି ଫ୍ୟାକ୍ଟରୀର ମାଲିକ। ଡ୍ରାଇଭର କହେ, ଇଚ୍ଛା କଲେ ସୁବୀର ଦାଦା କ'ଣ ଅନ୍ୟ ସମସ୍ତଙ୍କୁ ବି ସେ କାମରୁ ବାହାର କରିଦେଇ ପାରିବେ। ବାପା କେତେ ବଡ଼! ଆଖି ସାମନାରେ ବାପାଙ୍କ ପୃଥୁଳକାୟ ଶରୀରର ଆକୃତି ଆହୁରି ଦୀର୍ଘ ମନେ ହେଲା।

ଦୀପୁ ଆଖି ବୁଜିଦେଲା। ଆଖି ଖୋଲି ଦେଖେ ତ ବାହାର ରାସ୍ତାରେ ମୁହଁ ଦେଖାଇଛନ୍ତି ଦଳେ ପିଲା। ସାଇକେଲ୍‌ରୁ ଓହ୍ଲାଇ ସେଇ ପର୍ଯ୍ୟନ୍ତ ଦୌଡ଼ି ଆସିଲା ସେ। କିନ୍ତୁ ଫାଟକ ଖୋଲିବାକୁ ଯାଇ ମନ ତା'ର ବିଷଣ୍ଣ ହୋଇ ଉଠିଲା। ମାଉସୀ କହେ, ''ବାହାରକୁ ଏମିତି ଚାହିଁ ରହିବା ଅଭଦ୍ରାମୀ। ଇସ୍, କେତେ ସମୟ ରେଲିଂକୁ ମୁଠେଇ ଧରିଛ? କେତେ କିଏ ଫାଟକ ଖୋଲି ଆସୁଛନ୍ତି, ବାହାରକୁ ଯାଉଛନ୍ତି। ସେମାନଙ୍କର ଝାଳ, ମଇଳା, ଜୀବାଣୁ ଲାଗିବ ତୁମ ଦେହରେ।''

ସେ ପିଲାମାନଙ୍କ ହାତରେ ଅଧାଖଣ୍ଡିଆ ପିଜୁଳି। ଜାମାରେ ବୋତାମ ନାହିଁ। ଗୋଡ଼ରେ ଚଟି, ଯୋତା ବି ନାହିଁ। ପାଦ ଦିଶୁଚି ଧୂଳିଧୂସର। କିଛିକ୍ଷଣ ଦୀପୁକୁ ଚାହିଁ ସେମାନେ ଦୌଡ଼ି ପଳେଇଗଲେ। ଦୀପୁର ମନ ଧାଇଁଗଲା ସେମାନଙ୍କ ପଛରେ।

ସେମାନେ ଚାଲିଗଲେ ଲମ୍ୱା ରାସ୍ତାରେ ଦୌଡ଼ି ଦୌଡ଼ି କାହିଁ କେତେଦୂର, ଛାତ ଉପରେ ଠିଆହେଲେ ଯେଉଁଠି ଦେଖାଯାଏ ନଈ ଆଉ ପାହାଡ଼। ନଈ ବାଲିରେ ଖେଳିବା ଖୁବ ମଜା। ମାଉସୀ ସାଙ୍ଗରେ ନଈକୂଳକୁ ଯାଇଛି ସେ ଅଳ୍ପ କେତେଥର। ସବୁବେଳେ ହାତ ଧରିଥିବ। ଟିକିଏ ବି ବାଲିକୁ ଯିବାକୁ ଦେବନାହିଁ। ଦୀପୁ କହେ, "ଛାଡ଼ ମାଉସୀ! ମୁଁ ସେଇଠି ଖେଳିବି।" ମାଉସୀ କହେ, "ଡ଼େରି ହେଲାଣି, ପ୍ରାର୍ଥନା କରିବ। ପୁଣି କ୍ଷୀର ପିଇ ପାଠ ପଢ଼ି ବସିବ।"

"ମୁଁ ଡ଼େରିରେ ପ୍ରାର୍ଥନା କରିବି। କ୍ଷୀର ପିଇଦେଇ ଆଜି ବହୁତ ପଢ଼ିବି।" ଦୀପୁ ଜିଦ୍ କରେ।

ବାପା ତ କେବେ ବି ପ୍ରାର୍ଥନା କରନ୍ତି ନାହିଁ। ଫ୍ୟାକ୍ଟ୍ରୀ ଅଫିସ୍‌ରୁ ଫେରନ୍ତି ବହୁତ ଡ଼େରିରେ। ଆଉ ସବୁଦିନ ସନ୍ଧ୍ୟା ପୂର୍ବରୁ ମା' କୁଆଡ଼େ ହେଲେ ବୁଲାବୁଲି କରିବାକୁ ଚାଲିଯାଆନ୍ତି। ମାଉସୀ କହେ ସେ ସିନେମା ଯାଇଛନ୍ତି କିମ୍ୱା ଦିନେ ଦିନେ ସାଙ୍ଗ ଘରକୁ ବୁଲି ପଳାନ୍ତି। ସେଠାରୁ ଫେରି ବାପାଙ୍କ ସାଙ୍ଗରେ କ୍ଲବ୍ ଯାଆନ୍ତି। ଦୀପୁ ଯେତେ ଲଗେଇଲେ ବି ତାକୁ ସାଙ୍ଗରେ ନିଅନ୍ତିନି। ଦୀପୁ କହେ, "ମୁଁ ପଢ଼ିବିନି, ମୁଁ ବି ସିନେମା ଯିବି। କ୍ଲବ୍ ଯାଇ ଖେଳିବି।" ମାଉସୀ କହେ, "ବଡ଼ମାନଙ୍କର ପାଠପଢ଼ା ପିଲାଦିନୁ ସରିଯାଏ।" ଦୀପୁ କହେ, "ଖାଲି ମିଛ କଥା। ପାଠପଢ଼ା ସରିଯାଏ ତ ତୁ କାହିଁକି ଠାକୁର ଘରେ ବସି ବହି ପଢୁଛୁ? ବୁଲି ଯାଉନୁ, ସିନେମା ଯାଉନୁ।"

ମାଉସୀ କିଛି ସମୟ ଚୁପ୍ କରିଯାଏ। ତା'ପରେ କହେ, "ସାନ ପିଲା ଏତେ କଥା ପଚାରନ୍ତିନି। ଚୁପ୍‌ଚାପ୍ କଥା ମାନନ୍ତି।" "ଓଃ, ଖାଲି କଥା ମାନୁଥିବେ!"

ଦୀପୁ ଖାଇସାରି ଆଦୌ ଶୋଇବାକୁ ଯାଏନି। ଅପେକ୍ଷା କରେ ମା'କୁ। ଆଜି ସେ ନିଶ୍ଚୟ ମା' ପାଖରେ ଶୋଇବ। ସବୁଦିନ ମା' ଆସିବା ବେଳକୁ

ସେ ଶୋଇ ଯାଉଛି ନିଦରେ। ପୁଣି ସକାଳୁ ଉଠିଲେ ସ୍କୁଲ ଯିବା ବେଳ ହୋଇଯାଏ। "ହେଇ ମା' ଆସିଲେଣି, ଶୋଇପଡ଼ ଦୀପୁ ବାବୁ।"

ମା' ଆସୁଛନ୍ତି। ପଛ ପାହାଚରେ ହାତରେ ଗାଡ଼ି ଚାବି ଧରି ଆସୁଛନ୍ତି ବାପା। ଦୀପୁ ଭାବିଥିଲା ମା' କାନ୍ଧରେ ଓହଳି ପଡ଼ି କହିବ, "ମା, ମୁଁ ଆଜି ତୁମ ପାଖରେ ଶୋଇବି।" କିନ୍ତୁ ତାଙ୍କ ମୁହଁକୁ ଚାହିଁ ସେ ସବୁ କଥା ଭୁଲିଗଲା। ମା' ଚିତ୍କାର କରି ଉଠିଲେ- "ମାଉସୀ, ଦୀପୁ ଏ ଯାଏ ଶୋଇନି?" ଭୟରେ ସେ ଆଖି ବୁଜି ପକାଇଲା। ମାଉସୀ ତାକୁ ଧୀରେ ଧୀରେ କହିଲା, "ଏବେ ନ ଶୋଇଲେ ମା' ଖୁବ୍ ରାଗିଯିବେ।"

କିନ୍ତୁ ବାପା ବି ଏଡ଼େ ପାଟିରେ କ'ଣ କହୁଛନ୍ତି ଯେ? ମା' ବାପା କେଡ଼େ ଜୋର୍‌ରେ ପାଟି କରୁଛନ୍ତି? ଦୀପୁକୁ ଏମିତି ସମୟରେ ଭାରି ଖରାପ ଲାଗେ। ମାଉସୀ ତାକୁ ଥାପୁଡ଼ାଇ ଦେଇ ଶୁଆଇ ଦେଲା। ତା'ର ଇଚ୍ଛା ହେଲା ପଚାରିବ, "ମାଉସୀ, ବଡ଼ମାନେ କ'ଣ କଳି କରନ୍ତି?" ଇସ୍, ବାପା ଖାଲି ମିଛରେ ଏଡ଼େ ପାଟି କରୁଛନ୍ତି? ଦୀପୁ ବିଛଣାରେ ଉଠି ବସିଲା। ଭାବିଲା ଦୌଡ଼ିଯାଇ ବାପାଙ୍କୁ ମା' ପାଖରୁ ଠେଲିଦେବ ଯେ ସେ ତଳେ ପଡ଼ିଯିବେ। ଆଉ ପାଟିକରି ପାରିବେନି। କିନ୍ତୁ କାହିଁକି କେଜାଣି ଭୟରେ ସେ କାନ୍ଥକୁ ଆଉଜିଗଲା। ମାଉସୀ ତାକୁ ପୁଣି ଥରେ ବିଛଣାରେ ଶୁଆଇ ଦେଲା। ତା'ପରେ ପୂଜାରୀକୁ କହିଲା, "ଟେବୁଲ ଉପରେ ଏବେ ଖାଇବାକୁ ଦିଅନାହିଁ। ସେମାନେ ଆଜି ଖାଇବେନି ବୋଧହୁଏ।"

ଶୋଇ ଶୋଇ ଦୀପୁ ଏସବୁ କଥା ଶୁଣୁଥିଲା। ବିଛଣାରେ ଅସ୍ଥିର ଭାବରେ ଗଡ଼ି ଗଡ଼ି ସେ ନିଦରେ ଶୋଇଗଲା। ସକାଳୁ ଉଠି ଭାବିଲା ଟିକେ ମା'ଙ୍କୁ ଦେଖି ଆସିବ। କିଛି ନ ହେଲେ ଅଳ୍ପ ସମୟ ପାଇଁ ମା' କୋଳରେ ଶୋଇଯିବ ସେ। ସେଦିନ ତ ସେ ଦିନସାରା ଉଠିଲେନି। ତାଙ୍କ ଶୋଇବା ଘର ବନ୍ଦ କରି ସେମିତି ଶୋଇ ରହିଲେ। କାହା ସଙ୍ଗେ କଥା ବି କହିଲେନି।

ଗତ ରାତିରେ କିନ୍ତୁ ବାହାରୁ ଫେରିବା ପରେ ମା' ଭାରି ଖୁସି ଥିଲେ। ପ୍ରଥମେ ଆସି ମାଉସୀକୁ ପଚାରିଲେ  ଦୀପୁ ଖାଇଛି ତ? ପାଠ ପଢୁଥିଲା ନା ଖେଳୁଥିଲା ଖାଲି? ଦୀପୁ ଆଖି ମିଟ୍‌ମିଟ୍ କରି ସବୁ ଶୁଣିଲା ମା'ଙ୍କ ପ୍ରଶ୍ନ ଆଉ ମାଉସୀର ଉତ୍ତର। ବାପାଙ୍କ ଶାନ୍ତ ଚେହେରା ଦେଖି ଭାବିଲା

: ନା, ସେମାନେ ଆଜି ପାଟି କରିବେନି।

ଓଃ ଦୀପୁ ଆଉ କେତେ ସମୟ ଆଖି ବୁଜି ପଡ଼ି ରହିବ ଯେ! ମା' କାହିଁକି ପାଖକୁ ଆସୁ ନାହାନ୍ତି? ସତକୁ ସତ ମା' ଆସିଲେ। ଧୀରେ ତା' ମୁଣ୍ଡବାଳ ସଜାଡ଼ି ଦେଲେ। ଦୀପୁ ଆଖି ବୁଜି ଦେଲା। ପୁଣି ଟିକିଏ ଆଖି ଖୋଲି ଦେଖିଲା ବାପା ବି ଠିଆ ହୋଇଛନ୍ତି ତା' ଖଟ ପାଖରେ। ମା'କୁ କହୁଛନ୍ତି, ''ପିଲାକୁ ଗେହ୍ଲାକରି ତୁମେ ନଷ୍ଟ କରି ଦେଉଛ।'' ମା' ବୋଧହୁଏ ତାକୁ କୋଳ କରି ଶୋଇ ଥାଆନ୍ତେ। କିନ୍ତୁ ବାପା, ମା'ଙ୍କ ପିଠି ପାଖରେ ହାତ ଦେଇ ଏମିତି ନେଲେ ଯେ ମା' ବୋଧହୁଏ ପଡ଼ିଯାଇଥାନ୍ତେ। ବାପା ତାଙ୍କୁ ଧରି ପକାଇଲେ। ରକ୍ଷା ହୋଇଛି ମା' ଆଦୌ ରାଗିଲେ ନାହିଁ, ବରଂ ବାପାଙ୍କ ମୁହଁକୁ ଚାହିଁ ସେମିତି ହସୁଥିଲେ। ବାପା ତାଙ୍କ ହାତ ଧରି ନେଇଗଲେ ଆର ଘରକୁ।

ସେତେବେଳକୁ ଦୀପୁର ଆଖି ନିଦରେ ଭାରି ହୋଇ ଆସିଲା, ନହେଲେ ସେ ସତକୁ ସତ ଜିଦ୍ କରିଥାଆନ୍ତା ମା' ପାଖରେ ଶୋଇବ ବୋଲି।

କେତେ ନିଦରେ ଶୋଇଗଲା ଦୀପୁ! ସକାଳୁ ନିଦ ଭାଙ୍ଗିବା ବେଳକୁ ଦେଖେ ଯେ କାନ୍ଥ ପାଖରେ ଫିତା ଖଟରେ ଶୋଇଛି ମାଉସୀ।

ଦୀପୁ ପାଦ ଚିପି ଚିପି ଉଠିଗଲା ଛାତ ଉପରକୁ। ସେତେବେଳେ ନରମ ଖରାରେ କଳା, ଧଳା ରଙ୍ଗର ପୋଷା ପାରାମାନେ ଘୁମ୍ ଘୁମ୍ ହେଉଥିଲେ।

ନାଇଟ୍‌ସୁଟର ଦୁଇ ପକେଟରେ ହାତ ପୁରାଇ ଚୁପ୍‌ଚାପ୍ ହସୁଥିଲା ଦୀପୁ। ହଠାତ୍ ସେ କ'ଣ ଭାବି ପାରାମାନଙ୍କ ପାଖକୁ ଏଡ଼େ ଜୋର୍‌ରେ ଦୌଡ଼ିଗଲା ଯେ ସେମାନେ ଉଡ଼ିଯାଇ କିଛି ଦୂରରେ ବସିଲେ, ଏଇ ଖେଳ କେଜାଣି କେତେ ସମୟ ଚାଲି ଥାଆନ୍ତା।

ମାଉସୀଟା କେତେବେଳେ ଉଠି ଆସି ତାକୁ ତଳକୁ ଯିବାକୁ ଡ଼ାକିଲା। ଦୀପୁ କହିଲା-

''ଆଜି ଛୁଟି ଦିନ, ସ୍କୁଲ ନାହିଁ ଯେ...।''

ମାଉସୀ କହିଲା, ''କିନ୍ତୁ ଠିକ୍ ସମୟରେ ସବୁ କାମ କରିବା ଭଲ।''

ଦୀପୁ କିଛି ନ ଶୁଣି ଛାତସାରା ଦୌଡ଼ାଦୌଡ଼ି କରି ପାରାମାନଙ୍କ ପଛରେ ଗୋଡ଼ାଇଲା, ଶେଷରେ ପାରାମାନେ ଉଡ଼ିଯାଇ ସିଢ଼ିଘର ଛାତରେ ବସିଲେ। ମାଉସୀ ତା ହାତ ଧରି ତଳକୁ ନେଇଗଲା।

ସିଡ଼ିରୁ ଓହ୍ଲେଇ ଦୃଷ୍ଟି ପଡ଼ିଲା ସାମନା କୋଠରୀର କବାଟରେ। ଇଚ୍ଛା ହେଲା ଜୋର୍‌ରେ କବାଟକୁ ଧକାଏ ପକେଇବ।

ମାଉସୀ ତା ମନ କଥା ଜାଣିପାରି ତାକୁ ସେଠାରୁ ଟାଣି ଆଣୁ ଆଣୁ କହିଲା, ''ବାପାଙ୍କ ନିଦ ଭାଙ୍ଗିଲେ ସେ ରାଗିଯିବେ।''

ରାଗନ୍ତୁ। ଓଃ ଛୁଟିଦିନ ବୋଲି କେତେ ଶୋଇଛନ୍ତି। ପିଲାମାନେ ଖାଲି ଠିକ୍ ସମୟରେ ସବୁ କାମ କରିବେ।

ଦୀପୁ ମାଉସୀକୁ ଧରା ନ ଦେଇ ନିଜ ଶୋଇବା କୋଠରୀର ଖଟ ଉପରକୁ ଡ଼େଇଁ ପଡ଼ି ଆଖି ବୁଜି ଶୋଇ ପଡ଼ିଲା। ମାଉସୀ ଯେତେ ଗେହ୍ଲା କରି ଡ଼ାକିଲେ ବି ଦୀପୁ କିଛି ନ ଶୁଣି କାନ୍ଥକଡ଼କୁ ମୁହଁ ବୁଲେଇ ଶୋଇ ପଡ଼ିଲା।

ଶେଷରେ କିନ୍ତୁ ସେ ବାହାରକୁ ଆସି ଦାନ୍ତ ଘଷିଲା, ମାଉସୀ ତାକୁ ଗାଧୋଇ ଦେଇ ଭଲ ପ୍ୟାଣ୍ଟ, ସାର୍ଟ ପିନ୍ଧାଇ ଖାଇବା ଟେବୁଲ୍ ପାଖରେ ବସାଇବାବେଳେ ବାପା, ମା' ବି ସେଇଠି ଆସି ଚା' କପ୍ ଧରି ବସିଲେ। ତାକୁ ଚାହିଁ ମା' କହିଲେ:

''ଏ କ'ଣ ଦୀପୁ, ଏ ପର୍ଯ୍ୟନ୍ତ ସକାଳ ଖାଇବା ସରିଲାନି।''

ବାପା ବି ଠିକ୍ ସେମିତି ରାଗିବା ଭଳି ସ୍ୱର କରି କହିଲେ, ''ଦୀପୁ ଏବେ ଭାରି ଅବାଧ ହେଉଛି, ତାକୁ ହଷ୍ଟେଲକୁ ପଠେଇଦେବା।''

ଦୀପୁ ମା' ବାପାକୁ କିଛି ଉତ୍ତର ନ ଦେଇ ମୁହଁ ଗମ୍ଭୀର କରି ବସି ଗଳ୍ପ ବହିର ଚିତ୍ର ସବୁ ଦେଖୁଥିଲା।

ବାପା ଖବର କାଗଜରୁ ମୁହଁ ଉଠେଇ ମା'କୁ ମନେ ପକେଇ ଦେଲେ, ଆଜି ଛୁଟିଦିନ ସେ ଫାକ୍ଟ୍ରି ଯିବେନି।

ମା' ହସି ହସି କହିଲେ, ''ମନେ ଅଛି ତ? ସନ୍ଧ୍ୟାରେ ମିଷ୍ଟର ନାୟାରଙ୍କ ଘରେ ନିମନ୍ତ୍ରଣ, ସକାଳେ କିନ୍ତୁ ସୁଜାତା ଘରକୁ ଯିବାକୁ ହେବ।''

ବାପା କ'ଣ ଉତ୍ତର ଦେଇଥାଆନ୍ତେ, ମାତ୍ର ବହିରୁ ମୁହଁ ଉଠେଇ ଦୀପୁ କହିଲା, ''ମୁଁ ଯିବି ସୁଜାତା ଆଣ୍ଟି ଘରକୁ, ମୁଁ ଯିବି ମା'।''

ମା' ବିରକ୍ତ ହୋଇ କହିଲେ, ''ବେଶ୍ ତ, ଯୁଆଡ଼େ ବାହାରିଲେ କହିବ ମୁଁ ଯିବି।''

ଦୀପୁ ପୂର୍ବପରି ନୀରବ ହୋଇ ବସି ରହିଲା, କେବେ ତ ମା' ତାକୁ ବୁଲେଇ ନେଉ ନାହାନ୍ତି। ସବୁଦିନ ସେ ମାଉସୀ ପାଖରେ ରହୁଛି। ଆଜି

ଛୁଟି ଦିନରେ ବି...।

ଦୀପୁର ମନହେଲା ସେ କାନ୍ଦିବ, ଖୁବ୍ କାନ୍ଦିବ। ଠିକ୍ କାନ୍ଦିଥାଆନ୍ତା। କିନ୍ତୁ ସେତିକିବେଳେ ମାଉସୀ ଶୀଘ୍ର ଜଳଖିଆ ପ୍ଲେଟ୍‌ଟା ତା' ପାଖରେ ଥୋଇ ଦେଇ କହିଲା-

''ଦୀପୁବାବୁଙ୍କୁ ମୁଁ ଆଜି ଏମିତି ମଜାଗପ କହିବି ଯେ...''

''ଆରେ ଏଗୁଡ଼ା କିଏ ଖାଇବ ? ନା...ନା ମୁଁ ଏଗୁଡ଼ା ଆଦୌ ଛୁଇଁବିନି।''

ଖାଇବା ଟେବୁଲ୍ ପାଖରୁ ସେ ଉଠିଗଲା ସାଇକେଲ ପାଖକୁ। ତା'ପରେ ସାଇକେଲ ନେଇ ବାହାରକୁ ବାହାରି ଆସିଲା। ମାଉସୀ ଯେତେ ଡ଼ାକିଲେ ବି ଶୁଣିଲାନି।

ଖାଇବା ଟେବୁଲ୍ ଉପରେ ସେମିତି ପଡ଼ି ରହିଲା ଟୋଷ୍ଟ, ସିଝାଅଣ୍ଡା, ଗୋଟିଏ ବଡ଼କପ୍ କ୍ଷୀର, ଦୁଇଟି ପାଚିଲା କଦଳୀ।

ସବୁଦିନ ସେଇ ଏକା ଜଳଖିଆ ! ତାକୁ ଖାଇବ, ସ୍କୁଲକୁ ବି ଟିଫିନ୍ ନେବ ! ଶିବୁ, ମିଲି ପ୍ରତିଦିନ ନୂଆ ପ୍ରକାର ଟିଫିନ୍ ନେଇ ଆସନ୍ତି। ସୁଜାତା ଆଣ୍ଟି ଭାରି ଭଲ ପିଠା ତିଆରି କରନ୍ତି। ସେଦିନ ଶିବୁ, ମିଲି ତାକୁ ଡ଼ାକି କହିଲେ, ''ଆଜି ମା' ସନ୍ଦେଶ, ଆଳୁଚପ୍ ତିଆରି କରି ଦେଇଛନ୍ତି। ଆ, ସାଙ୍ଗ ହେଇ ଖାଇବା।''

ସେମାନେ ଦିନେ ଦିନେ ଟିଫିନ୍ ବଦଳ କରି ଖାଆନ୍ତି। ପ୍ରାୟ ଅଧିକାଂଶ ଦିନ ନ ଖାଇ ଟିଫିନ୍ ଫେରାଇ ଆଣେ ଦୀପୁ। ମାଉସୀ ମନ କଷ୍ଟ କରେ। ମା' ରାଗନ୍ତି।

ଓଃ, କି ଜୋର୍‌ରେ ହସ ଶୁଣାଯାଉଛି। ବାପା ମା' ବୁଲି ଗଲେନି ବୋଧହୁଏ, ସୁଜାତା ଆଣ୍ଟି ଓ ଅଙ୍କଲଙ୍କୁ ଡ଼କାଇ ଆଣିଲେ। ନାୟାର ଅଙ୍କଲ ବି ଆସିଛନ୍ତି। ସେମାନେ କେତେ ଗପୁଛନ୍ତି। ପୁଣି ମନଇଚ୍ଛା ନୂଆ ରେକର୍ଡ଼ ବଜେଇ ଶୁଣୁଛନ୍ତି।

ସାଇକେଲକୁ ଗଛକୁ ଡ଼େରି ଦୀପୁ ବାରଣ୍ଡା ଉପରକୁ ଉଠି ଆସିଲା, ଧୀରେ ଧୀରେ ବୈଠକଘର ପର୍ଯ୍ୟନ୍ତ ଚାଲିଗଲା। ଭିତରୁ ବାପାଙ୍କ କଥାବାର୍ତ୍ତା ଶୁଣି ସେ ଚମକି ପଡ଼ିଲା। ଆଉ ଆଗକୁ ତା'ର ପାଦ ଚଳିଲା ନାହିଁ। ବଡ଼ମାନେ ହସନ୍ତି ତ ! ପୁଣି ମୁହଁକୁ ଏମିତି କରନ୍ତି କାହିଁକି ? ଦୀପୁକୁ ସବୁ କଥା କେମିତି ଅସ୍ୱସ୍ତିକର ମନେହେଲା। ପଛକୁ ଫେରି ପୁଣି ତରତରରେ ଓହ୍ଲାଇ ପଡ଼ିଲା ସେ ବାରଣ୍ଡା ତଳକୁ, ସାଇକେଲରେ ବସି ଖୁବ୍ ଜୋର୍‌ରେ ଚଳାଇବାକୁ ଆରମ୍ଭ

କଲା ।

ଚଟାଣରେ ବେଶ୍ ଟାଣ ଖରା ହେଲାଣି । ରାସ୍ତାରେ କିନ୍ତୁ ଛାଇ ଅଛି । ଦୀପୁ ସାଇକେଲ ନେଇ ଆସ୍ତେ ଫାଟକ ଖୋଲିଲା । ଚୁପ୍‌ଚାପ୍ ଦେଖିଲା କେହି କୁଆଡ଼େ ନାହିଁ । ଏଥର ସେ ଚାଲିଯିବ ବହୁ ଦୂରକୁ । ଆଜି ଛୁଟିଦିନ, ସାମନାର ଫାଙ୍କା ରାସ୍ତାରେ ମନଇଚ୍ଛା ବୁଲିବ । ତା'ପରେ ନଈକୂଳ, ନଈବାଲି, ନୀଳ ଆକାଶର ସେଇ ଖୋଲା ଚିକ୍‌କଣ ଅଗଣା । ମନକୁ ମନ ହସି ପକାଇଲା ଦୀପୁ ।

ଆସ୍ତେ ଫାଟକ ବନ୍ଦ କରୁଥିଲା ସେ । କିଏ ସେଠି ? ଓଃ, ମାଉସୀ ଦେଖିଦେଲା କି ? ସେ ପାଟି କରୁଛି, ''ଦୀପୁ... ଏ ଦୀପୁ...'' ଝମ୍ କରି ମାଉସୀ ହାତରୁ କଫି କପ୍ ପ୍ଲେଟ୍ ସବୁ ବାରଣ୍ଡାରେ ପଡ଼ି ଭାଙ୍ଗିଗଲା ।

ମାଉସୀ ଦଉଡ଼ି ଆସୁଛି, ପାଟି କରୁଛି, ''ଦୀପୁବାବୁ ରାସ୍ତାକୁ ଚାଲିଗଲେ ମା'...ସାଇକେଲ କେଡ଼େ ଜୋର୍‌ରେ ଚଳାଇଛନ୍ତି ।''

ସେମାନେ ସବୁ ଚାଲି ଆସିଲେଣି- ମା, ବାପା, ନାୟାର ଅଙ୍କଲ, ସୁଜାତା ଆଣ୍ଟି । ସମସ୍ତେ ରାସ୍ତାରେ ତାକୁ ପାଟିକରି ଡ଼ାକୁଛନ୍ତି ।

ଦୀପୁ କାହା କଥା ଶୁଣୁନି, ସେ କାହାକୁ ଡ଼ରିବ ନାହିଁ, ସେମାନେ ସେମିତି ପାଟି କରୁଥାଆନ୍ତୁ, ଦୌଡ଼ନ୍ତୁ ତା' ପଛରେ, ତାକୁ ଧରି ପାରିବେନି । ସେ ଲୁଚିଯିବ, ତାକୁ ପାଇବେ ନାହିଁ । ଖୋଜୁଥିବେ ସେମିତି ।

ସାଇକେଲ ସ୍ପିଡ୍ ବଢ଼ାଇ ଛଅ ସାତବର୍ଷର ଦୀପୁ ଖୁବ୍ ଜୋର୍‌ରେ ଚଳାଇ ନେଉଛି । ଖୋଲା ଚଉଡ଼ା ରାସ୍ତାରେ ମାଡ଼ି ଆସୁଛି ବଡ଼ ବଡ଼ ବସ୍, ଟ୍ରକ । ଶୁଣାଯାଉଛି ମା, ବାପା, ଅଙ୍କଲ, ଆଣ୍ଟିମାନଙ୍କ ଚିତ୍କାର, ''ଦୀପୁ...ଦୀପୁ...ସାଡ଼େ ଯାଆନା, ଦୀପୁ ।''

ଦୀପୁ କିଛି ଶୁଣୁନି । ସେ ସେମିତି ଚାଲିଛି ଆଗକୁ, ଆହୁରି ଆଗକୁ... ।

□ □ □

ଆକାଶବାଣୀ, କଟକ, ସୌଜନ୍ୟରୁ
'ବିଷୁବ ଝଙ୍କାର', ୧୯୭୯

# ପୁଅ ଆସିବ

ଏଇ ଦିନଟିକୁ ଚାହିଁ ଚାହିଁ ଦୀର୍ଘ ଦୁଇବର୍ଷ ହୋଇଗଲା। ସେ ଆସିବ ଲେଖିଛି, ଚିଠିଟା ପାଇବା ପରେ ହାତରେଖାରେ ଦିନ ଗଣୁଛନ୍ତି ସେମାନେ। ଭାରି ଭଲ ଲାଗୁଛି ତା' କଥା ଭାବିବାକୁ। ଏଇ କେତେଦିନ ହେଲା ଶୂନ୍ୟରେ ଉଡ଼ି ବୁଲୁଛନ୍ତି ବିମଳା। ଆଖିକୁ ବିଶ୍ୱାସ ହେଉନି। ଚିଠିଟି ପଢ଼ିନେଇ ରଖିଦେବା ପରେ ବି ବାରମ୍ବାର ଦେଖିବାକୁ ଇଚ୍ଛା।

''ଶୁଣି ଖୁସି ହେବୁ ମା', ମୁଁ ଗୋଟାଏ ଭଲ ଚାକିରୀ ପାଇଛି।''

ବିମଳାଙ୍କ ଚକ୍ଷୁ ଅଶ୍ରୁସଜଳ ହେଲା। ପିଲାଟା କେଉଁଠି କିପରି ଚଳୁଥିଲା ଏତକ ଦିନ? ତାକୁ ଛାଡ଼ି ଆମେ ବି କେମିତି ଏକା ଏକା ରହିଛୁ?

ଅନ୍ୟ କେଉଁଦିନ ହୋଇଥିଲେ ଅନନ୍ତ କହନ୍ତେ, ''ତୁମେ ଏମିତି ମାୟାରେ କାହିଁକି ପଡ଼ିଛ? ତୁମେ କ'ଣ ଏକା ମା'ଟିଏ? ପୁଅ ଆଉ କାହାର ନାହିଁ?''

ନା, ଅନନ୍ତ ବାରମ୍ବାର କହୁଛନ୍ତି ଅନ୍ୟକଥା। ''ବିମଳା, ଆଉ କ'ଣ ଆସିବ କୁହ ତ? ସେ ଆସିଗଲେ ପୁଣି ବାହାରକୁ ଯାଇ ହେବନି।''

ବିମଳା ତାଙ୍କୁ ନୀରବରେ ଚାହିଁ ରହିଲେ କିଛି ସମୟ। ପୁଣି ଅନ୍ୟମନସ୍କ ଭାବରେ ବରାଦ କଲେ କେତୋଟି ଜିନିଷ।

ଅନନ୍ତ ବ୍ୟାଗ୍‌ଟିଏ ନେଇ କବାଟ ଖୋଲି ବାହାରି ଯାଉଛନ୍ତି। ବିମଳା କବାଟ ପାଖରେ ଠିଆହୋଇ ଚାହିଁ ରହିଛନ୍ତି ରାସ୍ତାକୁ।

''ମୋ ପିଲାଟିକୁ ତୁମେ ନଷ୍ଟ କରିଦେଲ। କେବେ ତାକୁ ଶାସନ କରିଛ?''

"ଘରେ ବସି ବସି ସବୁ ଜାଣି ସବୁ ଦେଖି ତୁମେ କ'ଣ କରୁଥିଲ? ତୁମର ଦାୟିତ୍ୱ କ'ଣ କେବଳ ଗେହ୍ଲା କରିବା?"

ବିମଳାଙ୍କ ମନ ଆତଙ୍କିତ। ଏଠାରୁ ଗଲାବେଳେ ତାକୁ ଚାହିଁ ହେଉ ନ ଥିଲା। ଜ୍ୟୋତିହୀନ ଦୁଇଟି ବଡ଼ ବଡ଼ ଆଖି। ମୁଣ୍ଡବାଳରେ କେତେଦିନ ହେବ ତେଲ ବାଜିନି କେଜାଣି? ଶୁଷ୍କ ମଳିନ ରଙ୍ଗ, କଣ୍ଢାସାର ହେବ। ପୁଅ ସିଦ୍ଧୁ, ସିଦ୍ଧାର୍ଥ। ସେ ଚେହେରା କ'ଣ ହେବଣି। ଦେହ କ'ଣ ବେଶି ଖରାପ ହେଲା? ହଁ, ପିଲାଟି ଦିନରୁ ସେ ଅସୁସ୍ଥ ହେଲେ ମା'କୁ ହିଁ ଖୋଜେ।

କେତେ କଥା ମନକୁ ଛୁଉଁଛି। ପ୍ରଥମେ ପ୍ରଥମେ ଚିଠିରେ ଲେଖୁଥିଲା, "ମା, ଘରେ ଥିବାବେଳେ ତୁ ମୋ ଉପରେ ବିରକ୍ତ ହେଉଥିଲୁ। ଏଠାରେ ଏତେ ବଡ଼ ମହାନଗରୀ। କିଛି ଲୁଚା ଛପା ନାହିଁ। ପୁଅ ଝିଅ ସାଙ୍ଗ ହୋଇ ବୁଲୁଛନ୍ତି। ମନ ଇଚ୍ଛା ଡ୍ରଗ୍‌ସ ଖାଉଛନ୍ତି- ସ୍ମାକ୍‌ସ, ବ୍ରାଉନ୍‌ସୁଗାର ମାତ୍ରା ଆଉ ଟିକିଏ ବେଶି। ତା'ପରେ ପରିମାଣ ବଢ଼ି ଚାଲିଛି। ମୁହୂର୍ତ୍ତକର ଆନନ୍ଦରେ ନିଜକୁ ଭୁଲୁଛନ୍ତି ସେମାନେ। ଏ ଭାରାକ୍ରାନ୍ତ ସମୟ, ଏ ଶତାବ୍ଦୀର ସମସ୍ତ କ୍ରୂରତା ସେମାନଙ୍କୁ ସ୍ପର୍ଶ କରି ପାରୁନି, ସେମାନେ ଥାଆନ୍ତି ଅନ୍ୟ ଏକ ରାଜ୍ୟରେ। ମୋ ପାଇଁ ବ୍ୟସ୍ତ ହେବୁ ନାହିଁ। ମୁଁ ଠିକ୍ ଅଛି। ପଢ଼ାପଢ଼ି କରୁଛି।"

ତୋ ପାଇଁ ବ୍ୟସ୍ତ ହୋଇ ମୁଁ କିଛି କରି ପାରିଲି? ତୋର ସେଇ ଉଜ୍ଜ୍ୱଳ ଚନ୍ଦ୍ରଭଳି ଚେହେରା! ସେତେବେଳେ ତୁ ମୋ କୋଳରେ ବଢୁଥିଲୁ ମୋ ଯତ୍ନରେ। ବୟସ ବଢ଼ିଲା, ନିଜ କଥା ନିଜେ ବୁଝିଲୁ। କଥା କଥାକେ କହୁଥିଲୁ, "ମୁଁ କ'ଣ ସାନ ପିଲା ହୋଇଛି? ତୁମେ ମୋତେ ଛାଡ଼ିଦିଅ ମୋ ହାତରେ।"

ଆମେ ତୋତେ ବାଧ୍ୟରେ ଛାଡ଼ିଲୁ ତୋ ଦାୟିତ୍ୱରେ। ସେତେବେଳେ ଅବସ୍ଥା ଯାହା ଆଉ କିଛି ଉପାୟ ନ ଥିଲା ରେ...!

"ବିମଳା, କ'ଣ ଏତେ ଭାବୁଛ ବସି?" ଅନନ୍ତଙ୍କ ସ୍ୱରରେ ଚମକି ଉଠିଲେ ବିମଳା। ଏଇ ଅଳ୍ପ କେତେ ସମୟ ମଧ୍ୟରେ ସେ ଫେରି ଆସିଲେଣି ବଜାରରୁ। ଅଥଚ ବିମଳା ବସି ରହିଛନ୍ତି ସେଇ ଗୋଟିଏ ସ୍ଥାନରେ!

ସ୍ୱାମୀଙ୍କ ହାତରୁ ବ୍ୟାଗ୍ ଦୁଇଟି ନେଇ ପାଖ କୋଠରୀକୁ ଚାଲି ଯାଇଥିଲେ ବିମଳା। ଅନନ୍ତ କ୍ଳାନ୍ତ ହୋଇ ବସି ରହିଲେ ବାରଣ୍ଡାର ସେଇ ଇଜି ଚେୟାର ଖଣ୍ଡକରେ। ବିମଳାକୁ ସେ କହି ନାହାନ୍ତି, ଏବେ ତାଙ୍କୁ ବେଶ୍ କ୍ଳାନ୍ତ ଲାଗୁଛି।

ପଚାଶ ବର୍ଷ ବୟସ, ମାତ୍ର ମନେ ହେଉଛି ସତେକି ସେ ଆଉ ପଚିଶ ଆଗେଇ ଗଲେଣି, ଜୀର୍ଣ୍ଣଶୀର୍ଣ୍ଣ ଦୂର୍ବଳ ବୃଦ୍ଧଟିଏ, ବିଛଣାରେ ପଡ଼ି ରହିବା ବ୍ୟତୀତ ଆଉ କିଛି କରି ପାରିବେ ନାହିଁ।

କିନ୍ତୁ କାହିଁକି ଏମିତି ହେଲା ? ନିଜ ହାତରେ ବିମଳାଙ୍କର ସବୁ ସ୍ୱପ୍ନକୁ ଉଜାଡ଼ି ଦେଲେ ସେ କାହିଁକି ?

ନୂଆ ନୂଆ କରି ଚାକିରୀ, ସୁନ୍ଦରୀ ପତ୍ନୀ ବିମଳା, କମ୍ପାନୀର ଛୋଟ ସୁନ୍ଦର କ୍ୱାଟର୍ସ। ସେଇ ବଗିଚାରେ ଥପ ଥପ ପାଦ ପକାଇ ଚାଲୁଥିଲା ଗୋଲଗାଲ ଉଜ୍ଜ୍ୱଳ ରଙ୍ଗର ପିଲାଟିଏ। ଫୁଲରୁ ଫୁଲକୁ ଉଡ଼ି ବୁଲୁଥିବା ଚିତ୍ର ବିଚିତ୍ର ପ୍ରଜାପତିଙ୍କ ପଛରେ ଧାଇଁ ଧାଇଁ ଝୁଣ୍ଟିପଡ଼ି କାନ୍ଦିବାବେଳେ ଅନନ୍ତ ତାକୁ କୋଳେଇ ନେଉଥିଲେ। ଅସ୍ତବ୍ୟସ୍ତ ହୋଇ କୋଉକାମ ଅଧା ପକେଇ ଧାଇଁ ଆସୁଥିଲେ ବିମଳା।

ଆଃ...ସେଇ ସୁନ୍ଦର ଦିନ ସବୁ ? ସିଦ୍ଧାର୍ଥର ଜନ୍ମଦିନରେ ଅଫିସ୍‌ର ସହକର୍ମୀ ବନ୍ଧୁ କେତେଜଣଙ୍କୁ ସେ ନିମନ୍ତ୍ରଣ କରିଥିଲେ ଘରକୁ। ସମସ୍ତେ ଯିବାପରେ ପଛକୁ ରହି ଯାଇଥିଲେ ଶୋଭନ। ଶୋଭନ କହିଲେ, ''ଏଭଳି ଡ୍ରାଏ ଭୋଜିରେ କଣ ଆନନ୍ଦ ଥାଏ କୁହ ତ ?'' ଅନନ୍ତ ହସୁଥିଲେ ସୁସ୍ଥ ସୁନ୍ଦର ହସ।

ପରଦିନ ଶୋଭନ ତାଙ୍କୁ ନିମନ୍ତ୍ରଣ କରିଥିଲେ ହୋଟେଲ 'ବ୍ଲୁ ହେଭେନ୍'କୁ। ଜୀବନର ପ୍ରଥମଥର ବାର୍‌ରେ ବସି ବେଶ୍ ରୋମାଞ୍ଚିତ ହେଲେ ଯୁବକ ଅନନ୍ତ। ଖାଦ୍ୟ ଶେଷ ପର୍ଯ୍ୟନ୍ତ ଛୋଟ ପେଗ୍‌ର ହ୍ୱିସ୍କି ଗ୍ଲାସଟି ସେ ଶେଷ କରି ପାରି ନଥିଲେ। ଅଥଚ ଶୋଭନ୍ କେତେ ସହଜରେ ଗ୍ଲାସ ପରେ ଗ୍ଲାସ ଶେଷ କରି ଦେଇଥିଲେ !

ସେଦିନ ପରେ ପରେ ଆସର ଜମିଲା ଅନ୍ୟ ବନ୍ଧୁମାନଙ୍କ ଘରେ। ସୁରାପାନର ଆନନ୍ଦ ହିଁ ଜୀବନର ଶ୍ରେଷ୍ଠତମ ସୁଖ ବୋଲି ମନେ କରୁଥିଲେ ଅନନ୍ତ। ଶେଷ ହେଲା ବିମଳାଙ୍କର ସମସ୍ତ ସଞ୍ଚିତ ଅର୍ଥ। ବୁଝାଇ ବୁଝାଇ ଥକିଲେ ସେ। ଅନନ୍ତ କିଛି ବୁଝିବାକୁ ପ୍ରସ୍ତୁତ ନ ଥିଲେ। ବରଂ ସେ ଯୁକ୍ତି କରନ୍ତି- ''ଏ ଜୀବନରେ କ'ଣ ଅଛି, ବିମଳା ? ଆଜି ଅଛି, କାଲିକି ହୁଏତ ନ ଥିବି। ପର ମୁହୂର୍ତ୍ତରେ କଣ ଘଟିବ କିଏ କହିବ ? ଟିକିଏ ଫୁର୍ତ୍ତି କରିବାକୁ ମନା କରୁଛ କାହିଁକି ?''

ସେଇ ମୁହୂର୍ତ୍ତକର ସୁଖ ଲାଗି ଯଥେଷ୍ଟ ଶାସ୍ତି ସେ ପାଇଛନ୍ତି। ନିଜର

ସଞ୍ଚିତ ଅର୍ଥ ଶେଷ ପରେ ଅଫିସ୍‌ର କ୍ୟାସ୍‌ବକ୍‌ସ ଦାୟିତ୍ୱରେ ଥାଇ ନିୟମିତ ସନ୍ଧ୍ୟାରେ କିଛି ଅର୍ଥ ନେଇ ପରଦିନ ଅଫିସ୍ ଆସିବା ପୂର୍ବରୁ ବିଭିନ୍ନ ବନ୍ଧୁମାନଙ୍କ ପାଖରୁ ନେଇ କ୍ୟାସ୍ ବକ୍‌ସରେ ରଖି ଦେଉଥିଲେ ସେ। ଏମିତି ବେଶିଦିନ କଟି ପାରିଲାନି। ଅଫିସ, ଅଫିସ୍ ବାହାରେ ସମସ୍ତେ ତାଙ୍କୁ ହାତ ଦେଖାଇ ମଦ୍ୟପ, ନଷ୍ଟଚରିତ୍ର, ଟଙ୍କା ମାଗିନେବ ଇତ୍ୟାଦି ଇତ୍ୟାଦି କଥାବାର୍ତ୍ତା କରୁଥିଲେ। ଘରେ ବି ସିଦ୍ଧାର୍ଥଙ୍କୁ ନେଇ ମହା ଅଶାନ୍ତି ସୃଷ୍ଟି ହେଉଥିଲା। "ପିଲାଟି ଦିନରୁ ଭଲ ପଢୁଥିବା ପୁଅଟି କେବଳ ତୁମରି ଗୁଣରୁ ନଷ୍ଟ ହୋଇଗଲା," ବିମଳା ବାରମ୍ବାର ଏଇ ଅଭିଯୋଗ କରୁଥିଲେ।

ଏସବୁ ଶୁଣିବା ପରେ ଅତ୍ୟଧିକ ମନସ୍ତାପରେ ଟିକିଏ ଅଧିକ ପିଇବା ବ୍ୟତୀତ ଅନନ୍ତଙ୍କର ଆଉ କିଛି ଶକ୍ତି ନ ଥିଲା। ତାଙ୍କର ଦୁର୍ଭାଗ୍ୟକୁ ଯେଉଁଦିନ କ୍ୟାସ୍‌ବକ୍‌ସରେ ପୂର୍ବରୁ ନେଇଥିବା ଟଙ୍କା ସେ ରଖି ପାରି ନ ଥିଲେ ଘଟଣାଚକ୍ରରେ ସେଇଦିନ ଅଫିସ୍‌ର ଅର୍ଥ ତୋଷରପାତ ଅଭିଯୋଗରେ ଧରାପଡ଼ି ଗିରଫ ହୋଇ ପରେ କିଛିଦିନ ଜେଲ୍ ଭୋଗିଥିଲେ ଅନନ୍ତ। ସତ୍ୟ ସ୍ୱୀକାର କରି ମଧ୍ୟ ସେ ନିସ୍ତାର ପାଇଲେ ନାହିଁ ଆଇନ୍‌ର ଦୃଢ଼ ହସ୍ତରୁ।

ଚିତ୍କାର କରି ମା'କୁ କହିଥିଲା ସିଦ୍ଧାର୍ଥ, "ବାପାଙ୍କ ପାଇଁ ଏଠି ମୁହଁ ଦେଖାଇ ହେବନି। ମୋତେ ଖୁବ୍ ଶୀଘ୍ର ଏ ଘର ଛାଡ଼ିବାକୁ ହେବ।"

ଅଳ୍ପ ଦିନର ବ୍ୟବସ୍ଥାରେ ବଡ଼ ମାମୁଁଙ୍କର ସହାୟତା ନେଇ କମ୍ପ୍ୟୁଟର ସାଇନ୍‌ସରେ ଉଚ୍ଚତର ଡ଼ିଗ୍ରୀ ପାଇଁ ସିଦ୍ଧାର୍ଥ ଦିଲ୍ଲୀ ଚାଲି ଯାଇଥିଲା।

ଜେଲ୍‌ରୁ ଫେରି ଚାକିରୀ ହରାଇ ଅତ୍ୟଧିକ ଦୁଃଖ ଓ ରୋଗରେ ମାସ ମାସ ଧରି ଡ଼ାକ୍ତରଖାନାରେ ପଡ଼ି ରହିଲେ ଅନନ୍ତ। ଶେଷ ସମ୍ବଳ ଗହଣା ଦି'ଖଣ୍ଡ ବିକ୍ରି କରି ବିମଳା ପରିସ୍ଥିତି ସହିତ ସଂଗ୍ରାମ କରିଥିଲେ। ଦୀର୍ଘଦିନ ଲିଭର ସିରୋସିସ୍ ଭୋଗି ଘରକୁ ଫେରିଲେ ଅନନ୍ତ।

ସେଇଦିନଠାରୁ ଛୋଟ ଭଡ଼ା ଘରଟିରେ ସୁଖ ଦୁଃଖକୁ ପାଥେୟ କରି ଚଳୁଛନ୍ତି ସ୍ୱାମୀ, ସ୍ତ୍ରୀ ଦୁଇଜଣ। ଏକମାତ୍ର ବନ୍ଧୁ ଶୋଭନ୍। ଏ ଦୁର୍ଦ୍ଦିନରେ ତାଙ୍କୁ ରାସ୍ତାକୁ ଛାଡ଼ି ଦେଇ ନାହାନ୍ତି। କୌଣସି ଏକ ପରିଚିତ ଫାର୍ମରେ ଅନନ୍ତଙ୍କ ପାଇଁ ଚାକିରୀଟିଏ ଯୋଗାଡ଼ କରି ଦେଇଛନ୍ତି ସେ।

"ସଂସାର ଚାଲିଛି, ପୂର୍ବକଥା ଭାବି ଅଯଥାରେ ଦୁଃଖ କାହିଁକି କରିବି ?"

"ଦୀର୍ଘ ଦୁଇବର୍ଷ ପରେ ମୋ ପୁଅ ଆସିବ ଘରକୁ, ପୁଅ ଆସିବ।" ନିଜକୁ ଏତିକି କହୁ କହୁ ଟିକିଏ ହର୍ଷ, ପରେ ପରେ ବିଷଣ୍ଣତାର ଭାବ ଫୁଟି ଉଠିଲା ତାଙ୍କ ମୁହଁରେ।

ସେ ପିଇବା ଛାଡ଼ିଦେଲେ, କିନ୍ତୁ ପୁଅ? ସମୟର ଗତିରେ ତାଳ ଦେଇ ଏବେକାର କିଶୋର କିଶୋରୀ, ଯୁବକ ଯୁବତୀ 'ଡ୍ରଗସ'କୁ ଜୀବନର ଚରମପନ୍ଥା ବୋଲି ମାନି ନେଇଛନ୍ତି। ସେ ବା କାହିଁକି ଏଥିରୁ ବାଦ୍ ଯିବ?

"ତୁମେ ଷ୍ଟେସନ ଯିବନି? କେତେଟା ବାଜିଛି ଦେଖିଲଣି?"

"ଆରେ ହଁ, ଠିକ୍ ମନେ ପକାଇଛ, ବିମଳା। ଦିଅତ ମୋର ସାଲ୍ ଖଣ୍ଡିକ।" ଅନନ୍ତ ତରତରରେ ଫାଟକ ଖୋଲି ଦ୍ରୁତ ଗତିରେ ରାସ୍ତାରେ ଚାଲିବାକୁ ଲାଗିଲେ।

ପୁଅ ଆସିଛି। ଗାଡ଼ିରୁ ଓହ୍ଲାଉଛନ୍ତି ଆଉ କେତେଜଣ। ସେମାନେ ସବୁ ତା'ର ଅନ୍ତରଙ୍ଗ ବନ୍ଧୁ। ଓଡ଼ିଶାର ଦର୍ଶନୀୟ ସ୍ଥାନ କେତୋଟି ଦେଖିବା ପାଇଁ ସେମାନଙ୍କର ଖୁବ୍ ଇଚ୍ଛା ଥିବାରୁ ସିଦ୍ଧାର୍ଥ ନେଇ ଆସିଛି ସେମାନଙ୍କୁ। ଚିଠିରେ ପୂର୍ବରୁ ଲେଖିଥିବାରୁ ସବୁ ବ୍ୟବସ୍ଥା କରିଛନ୍ତି ବିମଳା। କିନ୍ତୁ ସେ କାହିଁ? ତା'ର ସେଇ ପତଳା ଡ଼େଙ୍ଗା ଚେହେରା କେଉଁଠି ଏମାନଙ୍କ ପଛରେ ଲୁଚି ଯାଇଛି। ପରଦା ଆଡ଼େଇ ରାସ୍ତାକୁ ଚାହିଁଛନ୍ତି ବିମଳା, ଅନନ୍ତ ପାହାଚରେ ଉଠିଲେଣି ଅଥଚ ତାକୁ ସେ ଦେଖିଲେନି।

"ମା'...." ଏ ଡ଼ାକରେ ପଛକୁ ଚାହିଁ ସ୍ତବ୍ଧ ହୋଇଗଲେ ବିମଳା।

"ସିଦ୍ଧୁ, ମୋ ଧନ, ତୁ ଫେରି ଆସିଲୁ" ବିମଳାଙ୍କ କଣ୍ଠରେ କଥା ସବୁ ଅଟକି ରହିଛି। ଆଖିରୁ ଝରୁଛି ଆନନ୍ଦାଶ୍ରୁ, ଏ ମୋର ସେଦିନର ପୁଅ ନୁହେଁ। କେତେ ସୁନ୍ଦର ସ୍ୱାସ୍ଥ୍ୟ, ପିଲାଦିନର ସେଇ ରୂପକାନ୍ତି, କେଡ଼େ ଯୋଗ୍ୟର ମୋ ପୁଅ, କମ୍ପ୍ୟୁଟର ସାଇନ୍ସରେ ବିଶେଷ ଯୋଗ୍ୟତା କରି ଏ ସହରକୁ ଆସିଛି ସରକାରଙ୍କ ସାଦର ନିମନ୍ତ୍ରଣରେ। ହସଲୁହରେ ପୁଅକୁ କୋଳାଗ୍ରତ କଲେ ବିମଳା।

"ନା..ନା ମା', ଭୋକ ହେଉନି ଏବେ। ତୁ ମୋ ପାଖରେ ବସ, ଟିକିଏ ପରେ ଆମେ ଖାଇବୁ।" ସିଦ୍ଧାର୍ଥ ମା'ଙ୍କ ହାତ ଟାଣି ଶୋଇବା ଘରକୁ ଗଲା।

''କ'ଣ ରାନ୍ଧିଛୁ ? ଏମାନେ ଭାରି ଖାଇବାବାଲା ।''

''ତୁ ବ୍ୟସ୍ତ ହ'ନା । ସେମାନେ ଏଡେବଡ଼ ଅଫିସର୍ ସବୁ । ତାଙ୍କ ଚର୍ଚ୍ଚା ଲାଗି ବାପା ହୋଟେଲରୁ ମଗାଇ ଆଣିବେ । ସେ ବ୍ୟବସ୍ଥା ସେ କରିଛନ୍ତି ।''

''କିଏ ଅଫିସର୍ ? ସେମାନେ ସମସ୍ତେ ତ ତୋରି ପୁଅ । ଏତେଦିନ ପରେ ଘରକୁ ଫେରିଲି, ତୁ କହୁଛୁ ଆମେ ହୋଟେଲରେ ଖାଇବୁ !''

''ସିଦ୍ଧୁ...''ବିମଳାଙ୍କ ଓଠରେ ହସ ଚହଟିଲା । ''ମୁଁ ରାନ୍ଧିଦେବି ରେ ଧନ, ତୋ ଖାଇବା ତ ଢ଼େରି ଅଛି ।''

ବହି ଥାକରେ ଦୁଇଟି ସୁଦୃଶ୍ୟ ବିଦେଶୀ ପାନୀୟର ବୋତଲ ସତେକି ସିଦ୍ଧାର୍ଥକୁ ଚାହିଁ ରହିଥିଲେ ।

''ମା' ଏ କ'ଣ ? ବାପା କ'ଣ ପୁଣି... ? ତୁ ପରା ଲେଖିଥିଲୁ ଦେହ ଖରାପ ପରେ ପରେ ବାପା ପିଇବା ଛାଡ଼ି ଦେଇଛନ୍ତି ?''

''ବାପା ତ ଅନେକ ଦିନରୁ ସେସବୁ ଛାଡ଼ି ଦେଇଛନ୍ତି । ତୋତେ ପରା କହିଲି, ଏ ସବୁ ଆୟୋଜନ ତୋର ସେଇ ଦୂରସହରର ବନ୍ଧୁମାନଙ୍କ ପାଇଁ ।'' ବେଶ୍ ଦୃଢ଼ ଭାବରେ କଥାଟା କହି ପକାଇଲେ ବିମଳା ।

''ଫଲ୍‌ସ ସେନ୍‌ସ ଅଫ୍ ଆରିଷ୍ଟୋକ୍ରାସି''- ଏତିକି ଉଚ୍ଚାରଣ କରି ଖୁବ୍ ଜୋର୍‌ରେ ହସି ଉଠିଲା ସିଦ୍ଧାର୍ଥ ।

ବାହାର ଘରେ ସିଦ୍ଧାର୍ଥର ବନ୍ଧୁମାନଙ୍କ ସହ କଥାବାର୍ତ୍ତା କରୁଥିଲେ ଅନନ୍ତ । ହଠାତ୍ ଏ ହସ ଶୁଣି ସେଇ ଘରୁ ଧାଇଁ ଆସିଲେ ସେ ।

ସିଦ୍ଧାର୍ଥର ହାତରେ ବିଦେଶୀ ପାନୀୟର ସେଇ ସୁଦୃଶ୍ୟ ବୋତଲ ଦୁଇଟି । ତାକୁ ଚାହିଁ ସେମିତି ସେ ହସି ଚାଲିଛି । ସେ ହସ ବ୍ୟାପି ଯାଉଛି ଅଣୁ, ପରମାଣୁ, ଏ ସହର, ରାଜ୍ୟ, ଦେଶ, ବିଦେଶ ଅତିକ୍ରମ କରି ବିଶ୍ୱର ସମସ୍ତ ପ୍ରାନ୍ତକୁ । ସେ ଯେପରି ଧିକ୍କାର କରୁଛି, ତାଚ୍ଛଲ୍ୟ କରୁଛି ଅଭିଶପ୍ତ, ନିଶାସକ୍ତ ତରୁଣମାନଙ୍କୁ, ବୁଦ୍ଧିହୀନ, କାଣ୍ଡଜ୍ଞାନରହିତ ମୂଢ଼ମାନବ ସମାଜକୁ । ସିଦ୍ଧାର୍ଥର ହସ ବନ୍ଦ ହୋଇନାହିଁ । □ □ □

ଆକାଶବାଣୀ,କଟକ, ସୌଜନ୍ୟରୁ
କଥା, ୧୯୮୭

# ଶେଷ କଥା

ମୋ ଜୀବନର ସେଇ ରାତିଟି ଏକ ଅଭୁଲା ସ୍ମାରକୀ ରୂପେ ଏବେ ବି ମୋ ମନକୁ କ୍ଷତ ବିକ୍ଷତ କରି ଚାଲିଛି। ମୁଁ ଯେତେବେଳେ ପ୍ରଥମେ ସହରକୁ ଆସେ, ମୋ ବୟସ କେତେ ହେବ କେଜାଣି, ତା' ଠିକ୍ କହି ପାରିବିନି। ତେବେ ଧରନ୍ତୁ ଏଇ ଦଶ ବାରବର୍ଷ ହୋଇଥିବ। ମାମୁଁ ଘରେ ରହିବିନି ବୋଲି ଗାଁକୁ ଫେରି ଆସିଲି। ବୋଉ ଆଦର କରି କୋଳକୁ ଆଉଜାଇ ଆଣି କହିଲା, "ବାପା, ମାମୁଁ ପରା ତତେ ପୁଅ କରି ନେଇଛନ୍ତି। ତାଙ୍କ ମନରେ କଷ୍ଟ ଦେଇ ଲୁଚି ପଳେଇ ଆସିଲୁ?" ମୁଁ ଭାବିଥିଲି ସେ କହିବ, "ଧନରେ, ଚାଲି ଆସିଲୁ ଭଲ କଲୁ। ତୋତେ ନ ଦେଖି ମୋ ଦୁଇ ଆଖି ଫୁଟି ଯାଉଥିଲା।" ବୋଉ କଥାରେ ଅଭିମାନ କରି ମୁଁ ଚୁପ୍‌କରି ବସି ରହିଲି। କହିଲି ନାହିଁ ଯେ ମାଇଁ ମୋତେ ଖାଇବାକୁ ନ ଦେଇ କେତେ କଷ୍ଟ ଦେଇଛି। ଉପରଓଳି ବାଡ଼ିରେ ଶାଗକିଆରି ନ ହାଣି ଗାଁ ପିଲାଙ୍କ ସଙ୍ଗେ ଖେଳିଲି ବୋଲି ମାମୁଁଙ୍କ ମାଡ଼ ଦରଜ ଏବେ ବି ପିଠିରୁ ଯାଇନି। ଚାରି ପାଞ୍ଚଦିନର ପଚା ପଖାଳ ଦୁଇମୁଠା ସକାଳେ ଖାଇଥିଲି। ସନ୍ଧ୍ୟା ହେଲାଣି ଆସି ଏ ପର୍ଯ୍ୟନ୍ତ ବୋଉର ଗପ ସରୁନି। ଖାଇବାକୁ ନ ଦେଇ ସେ ଖାଲି କହୁଛି ମାମୁଁଘର ସମ୍ପତ୍ତି କଥା। କହୁଛି, "ପୋଖରୀରେ କେତେ ମାଛ, ବାଡ଼ିରେ ଆମ୍ବ, ପଣସ, ନଡ଼ିଆ। ବିଲରେ ବର୍ଷକର ଧାନ, ଏସବୁ କାହାର? ସବୁ ପରା ତୋରି ହେବ। ମାମୁଁ ମାଇଁ ବାପା, ମା' ସମାନ। ମାଡ଼ ଗାଳି ଦେଲେ ମନରେ ଧରିବୁନି ବୋଲି ବାପା କେତେ ବୁଝେଇଥିଲେ, ଏବେ ତତେ ଦେଖିଲେ କ'ଣ କହିବେ କହିଲୁ?"

ଭୋକରେ ପେଟ ମୋଡୁଥିଲା। କିଏ ଜାଣେ ବାପା ଆସିଗଲେ ପୁଣି କ'ଣ କହିବେ! ତା' ଆଗରୁ ପିଠା ଖଣ୍ଡେ କି ମୁଢ଼ିଗଣ୍ଡେ ପାଟିରେ ପକେଇବାକୁ ବି ଦଉନି। ସେ ପାଖରୁ ସାନ ଭାଇ, ଭଉଣୀଙ୍କର ପଣିକିଆ ବୋଲିବା ଶବ୍ଦ ଶୁଣାଯାଉଥାଏ। ମୋ ଦେହରେ କ'ଣ ବଳଥାଏ ଯେ ମୁଁ ଉଠି ଘର ଭିତରକୁ

ଯାଆନ୍ତି। ମନ ହେଲା କହନ୍ତି, "ବୋଉ ଲୋ, ମତେ ଖାଇବାକୁ ଦବୁ ନା ଖାଲି ଏମିତି ଗପୁଥିବୁ।" ମନ କଥା କାହାକୁ ନ କହି ଚୁପ୍‌ଚାପ୍ ବୁଜେଇ ସେଇଠି ବସି ରହିଲି।

ଗାଁ ଦାଣ୍ଡ ଅନ୍ଧାର ହେଲା; ବାପା ଫେରିଲା। ଆଉ କେଉଁ ଗାଁକୁ ବାହାଘର କାର୍ଯ୍ୟରେ ଯାଇଥିଲା ସେ। ଆଗରୁ ଏମିତି ଗଲେ ଗାମୁଛା କାନିରେ ବାନ୍ଧି କେତେ ମିଠେଇ, ଖଜା ଆଣିଥାଏ। ଆଗ ଖୋଲି ମତେ ଦେବ, ଭାଇ ଭଉଣୀତକ ମୋଠୁଁ ଛଡ଼ାଛଡ଼ି କରି ଖାଆନ୍ତି। ଗାମୁଛା କାନିରେ ସେଇ ପୁଟୁଳା ସବୁ କାନ୍ଧରେ ଝୁଲୁଥିଲା। ତାକୁ ଖୋଲିବ କ'ଣ ଓଲଟି ମୁଁ ଫେରି ଆସିଲି ଶୁଣି ଗର୍ଜନ କରି ଉଠିଲା, "ଶଳା, ଲକ୍ଷ୍ମୀଦ୍ରୋହୀ, ଲକ୍ଷ୍ମୀଙ୍କୁ ଗୋଇଠା ମାରି ଚାଲି ଆସିଲୁ, କହୁଛି କ'ଣ ନା ଯିବିନି।" ତଣ୍ଟିଫଟେଇ କୋହ ଉଠିଲା। ବାପା ଡ଼ରରେ ପାଟିକରି କାନ୍ଦି ବି ପାରିଲିନି, ସେ ସେମିତି ଗାଳିଦେଇ କମ୍ପଉଥାଏ। ବୋଉ ଉଠି ଯାଇଥାଏ ଘର ଭିତରକୁ। ସେ ହେଲେ ଏ ବେଳରେ ମୋ ପାଖରେ ବସିଥାଆନ୍ତା। ବୋଉକୁ ପାଟିକରି ଡ଼ାକି ବାପା ଚାଲିଗଲା ଘର ଭିତରକୁ। ଜିଦ୍ ଲାଗିଥାଏ ତା'ର, ସେଇ ରାତିରେ ମୋତେ ନେଇ ମାମୁଁଘରେ ଛାଡ଼ି ଆସିବ। ମୁଁ ଉଠି ବସିଲି। ହଠାତ୍ ମୋର ସେଇ ଦୁର୍ବଳିଆ ଦେହଟାରେ ଶତ ସିଂହର ବଳ ମାଡ଼ି ଆସିଲା। ଏକମୁହାଁ ହୋଇ ଦୌଡ଼ିବାରେ ଲାଗିଲି। କେଜାଣି କେତେ କୋଶ ବାଟ ଏମିତି ଦୌଡ଼ି ଦୌଡ଼ି ଚାଲି ଆସିଥିବି। ଗୋଡ଼ ହାତ ଝୁଣ୍ଟିପଡ଼ି ଲହୁ ଲୁହାଣ। ଥକା ମାରିବାକୁ ବେଳ କାହିଁ? ନିର୍ଘାତିଆ ଡ଼େଙ୍ଗା କଳା ଲୋକଟାଏ ଠେଙ୍ଗାଟାଏ ଧରି ମୋ ପଛରେ ଯେମିତି ଦୌଡ଼ି ଆସୁଥାଏ, ସେଇ ଡ଼ରରେ ଏମିତି କେତେ ବାଟ ଧାଇଁ ଆସିଲି। ନାଲି ବସ୍‌ଟାଏ। ଲୋକ ଭିଡ଼ରେ ଫାଟି ପଡୁଥାଏ। ତାରି ଭିତରେ ଗଳିଯାଇ ଲୋକମାନଙ୍କ ପାଦତଳେ ଥକ୍‌କା ହୋଇ ବସିଗଲି। ବସ ଧାଇଁଥାଏ। ମୋ ଦେହରେ ଆଉ ଜୀବନ ନାହିଁ। କେତେବେଳକେ କଣ୍ଡକ୍ଟର ମୋ ପାଖକୁ ଆସି କେଞ୍ଚାଏ ଦେଇ ପାଟିକରି କହିଲା, "ଏ ପିଲା, କୁଆଡ଼େ ଯିବୁ?" ମୁଁ ତାକୁ ଢଳଢଳ କରି ଦେଖୁଥାଏ। ଲୋକଟା ସତେକି ମାରି ପକେଇବ। ମୁଁ କାନ୍ଦ କାନ୍ଦ ହୋଇ କହିଲି, "କାଳିମାଟି"। ବସ୍ ସାରା ଲୋକେ ହସରେ ଫାଟି ପଡ଼ିଲେ। ସେ ମତେ ପଇସା ମାଗୁଥାଏ। ମୋ ପାଖରେ ପଇସା କାହିଁ ଯେ ମୁଁ ତାକୁ ଦେଇଥାଆନ୍ତି। କିଏ କହୁଥାଏ, ପକେଟମାର୍‌ଟାଏ,

ତାକୁ ବାହାରକୁ ଠେଲିଦିଅ। ଆଜି କେତେ ଲୋକଙ୍କ ପକେଟ୍ କାଟିଥାଆନ୍ତା। ମୁଁ ଥରି ଥରି ପଡ଼ିଗଲି ସେଠି, ଚେତା ହଜିଗଲା। ଖାଲି ଲାଗୁଥାଏ କୂଅ ଭିତରେ ପଡ଼ିଗଲି କି? ବାହାରେ କେତେ ଲୋକଙ୍କର କ୍ଷୀଣ ସ୍ୱର ମୋ କାନରେ ବାଜୁଥାଏ। କିଏ ଜଣେ କାନରେ କହିବା ଭଳି ମୋତେ ଡ଼ାକିଲା, "ଏ ପିଲା ଉଠ୍। ପାଣି ନେ।" ମୋ ମୁହଁରେ ପାଣି ଛାଟି ମୋତେ କୋଳେଇ ଧରି କିଏ କହୁଥାଏ, "ଆଖି ଖୋଲ୍, କେମିତି ଲାଗୁଛି?" ଆଖି ଖୋଲି ଦେଖେ ତ ମଧ୍ୟବୟସର ଲୋକଟିଏ ମୋତେ ତା' ସିଟରେ କୋଳକୁ ଆଉଜାଇ ଧରିଛି। ବସ୍ ସେମିତି ଚାଲିଥାଏ। ଅନ୍ୟ ସମସ୍ତେ ପ୍ରାୟ ଢୁଳେଇ ପଡ଼ିଥାଆନ୍ତି। କିଛି ସମୟ ତା' ମୁହଁକୁ ଚାହିଁ ମୁଁ ଆଖି ବୁଜିଦେଇ ଶୋଇଗଲି। ସେ କଥାବାର୍ତ୍ତା କରୁଥାଏ ତା' ପାଖ ଲୋକ ସାଙ୍ଗରେ। କାହା ପିଲା କେଜାଣି? ଚେହେରା ଖଣ୍ଡିକ ତ ରାଜା ପୁଅ ଭଳି ଦିଶୁଛି। ମୁଁ ଆଉ କିଛି ଶୁଣିବା ପୂର୍ବରୁ ମୋତେ ନିଦ ହୋଇଗଲା।

ବସ୍‌ରୁ ଓହ୍ଲେଇ ମୁଁ ଆସିଲି ସେଇ ଲୋକ ସାଙ୍ଗରେ ତା' ବସାକୁ। ତା'ର ଜଣେ ସାଙ୍ଗ ପିଅନ୍ ରାନ୍ଧି ରଖିଥିଲା ଭାତ, ଡ଼ାଲମା। ରାତି ଅଧରେ ଅସୀମ ତୃପ୍ତିରେ ସେତକ ଖାଇଦେଇ ମୁଁ ଶୋଇ ପଡ଼ିଲି। ସେ ଲୋକଟି ମୋତେ ପଚାରି ସବୁ କଥା ଶୁଣି ସାରିଥାଏ 'ସେତେବେଳକୁ। ରାତିରେ ମତେ କେବଳ ଶୋଇ ପଡ଼ିବାର ନିର୍ଦ୍ଦେଶ ଦେଇ ସେ ବି ଶୋଇଗଲା।

ମୋତେ ଖୁବ୍ ସକାଳୁ ଉଠେଇ କହିଲା, "କହ୍ନେଇ, ବାହାରି ପଡ଼୍ ଜଲ୍‌ଦି, ତତେ ଜଣେ ବଡ଼ ଆଇ.ଏ.ଏସ୍ ବାବୁଙ୍କ ଘରେ ରଖେଇ ଦେବି। କହିବି ତୋତେ ଆମ ଗାଁରୁ ଆଣିଛି। ବୁଝିଲୁ ତ, ତୁ ବି ମୋତେ ମାଧବ ଭାଇ ବୋଲି ଡ଼ାକିବୁ ଆଜିଠୁଁ।" ମୁଁ ଆଶ୍ଚର୍ଯ୍ୟରେ ତାକୁ ଚାହିଁ ରହିଲି। ପୁଣି ମୋ ହାତରେ ଚିତାକୁଟା ହେଇ ନୀଳ ବର୍ଣ୍ଣରେ ଲେଖାଥିବା ସେଇ କହ୍ନେଇ ନାଁଟାକୁ ଆଉଥରେ ଚାହିଁ ଦେଖିଲି।

ମାଧବ ଭାଇ ବଜାରରୁ କିଣି ଆଣିଥିବା ନୂଆ ସାର୍ଟ, ପ୍ୟାଣ୍ଟ ଦୁଇଟି, ଗାମୁଛା ଖଣ୍ଡେ, କନା ବ୍ୟାଗ୍ ଖଣ୍ଡେ, ଚଟି ହଳେ ଦେଖି ମୁଁ ବିସ୍ମୟ ଆନନ୍ଦରେ ବିହ୍ୱଳ ହୋଇ ଉଠିଲି। ସେ କହିଲା, "ଦେଖ୍ କହ୍ନେଇ, ତୁ ଚାକିରୀ କରିବୁ ପନ୍ଦର ଟଙ୍କାରେ। ଆଉ ଏ ଜିନିଷ ପାଇଁ ମୋତେ ଦୁଇମାସର ଦରମା ଟଙ୍କାଟା

ଦେଇଦେବୁ।'' ମୁଁ ମୁଣ୍ଡ ହଲେଇ ହଁ ମାରିଲି। ନୂଆ ଜାମା, ପ୍ୟାଣ୍ଟ ପିନ୍ଧି ମାଧବ ଭାଇର ବାବୁଙ୍କ ଘରକୁ ବାହାରିଗଲି।

ନିଯୁକ୍ତି ମିଳିଗଲା। ମା' କହିଲେ, ''ଘରର ପୁଅ ଭଳି ଚଳିବୁ। ସବୁ କାମ ଶିଖେଇ ଦେବି। ଭଲ ମଣିଷ ହୋଇ ଆମ ପାଖରେ ରହିବୁ।'' ବାବୁଙ୍କର କେବଳ ଦୁଇଟି ପ୍ରଶ୍ନ।

''ତୋ ନାଁ ?''

''କହ୍ନେଇ ରଥ।''

''ବାପାଙ୍କ ନାଁ ?''

''ଶମ୍ଭୁ ରଥ...ଗାଁରେ ପୁରୋହିତ କାମ କରନ୍ତି।'' ଗାଁରୁ ଆସିଛି, କାମ ଜାଣିନି ବୋଲି ପ୍ରଥମେ ବାବୁ ରାଜି ହେଉ ନ ଥିଲେ ରଖିବାକୁ। ମା' କିନ୍ତୁ କାମ ଶିଖେଇ ଦେବାର ଦୃଢ଼ ପ୍ରତିଶ୍ରୁତି ଦେଲେ। ଆହା, ସେ ମା'ଙ୍କୁ ଏ ଜୀବନରେ ଭୁଲି ପାରିବିନି। ହାତ ଧରି, ବାପଧନ କହି ରୋଷେଇ ଘରେ କାମ ଶିଖାନ୍ତି। ଆଉ ତାଙ୍କ ସ୍ନେହ, ଶ୍ରଦ୍ଧା ପାଇ କାମରେ ମନଦେଇ ମାତ୍ର ଦୁଇ, ତିନିଟା ବର୍ଷରେ ମୁଁ ସବୁ ଶିଖିଥିଲି। ମୁଁ ଜାଣିଲି, ମୋ ବିନା ସେ ଘର ଦଣ୍ଡେ ଚଳିବନି। ସମସ୍ତଙ୍କ ମୁହଁରେ ସେଇ ଗୋଟିଏ ଡ଼ାକ କହ୍ନେଇ...କହ୍ନେଇ।

ଘରକୁ ବାବୁ, ମା'ଙ୍କ ସାଙ୍ଗମାନେ ଆସିଲେ ମୁଁ ଚା' କରିଦିଏ। ନାନୀଙ୍କର ଇସ୍କୁଲ ସାଙ୍ଗମାନେ ଆସିଲେ ମୋ ମନଟା ଭାରି ଖୁସି ହୋଇଯାଏ। ନାନୀ ବରାଦ କରନ୍ତି, ''କହ୍ନେଇ ଯା, ବଜାରରୁ ଗରମ ବରା, ଆଳୁଚପ କିଣି ନେଇ ଆସିବୁ। ଆମକୁ ପ୍ଲେଟ୍ ଆଣି ଦେ, ଚିଲିସସ୍ ଆଣି ଦେ। ସେ ଘରେ ବୋଉ ଆଚାର ରଖିଛନ୍ତି ଆଣ୍।'' ଇତ୍ୟାଦି ଇତ୍ୟାଦି ବରାଦ ସବୁ ଦୌଡ଼ି ଦୌଡ଼ି ମୁଁ ପାଳନ କରେ। କରିବିନି କେମିତି ? ନାନୀଙ୍କର ସେ ମିଠା କଥା କେତେ ଭଲ !

ପିଅନ ଗିରିଜା ମୋତେ ଡ଼ାକି ସେଦିନ କହିଲା, ''ତୋ ଭାଗ୍ୟଟା ବଡ଼ ତେଜ୍‌ରେ ପିଲା। ତୋତେ ଦେଖିଲା ଦିନୁ ନାନୀ ତ ମୋତେ ଟିକିଏ ବି ପଚାରୁ ନାହାନ୍ତି। ଆଗରୁ ଏ କାମ ସବୁ ମୁଁ କରୁଥିଲି। ହଁ, ଆଉ ଗୋଟିଏ ଖବର ଶୁଣ୍। ତୋ ମାଧବ ଭାଇର ପିଅନ୍ ଚାକିରୀ ସ୍ଥାୟୀ ହୋଇଗଲା। ଖାଲି ତୋରି ପାଇଁ ଏସବୁ ହେଲା। ଚଉଦ ପନ୍ଦର ବର୍ଷର ପିଲା ହେଲୁଣି।

କହନ୍ତୁ ବାବୁଙ୍କୁ ପିଅନ୍ କରିଦେବେ। ସବୁ କାମ ତ କରୁଛୁ ତାଙ୍କର।"

ମୁଁ ତା' ମୁହଁକୁ ବୋକାଙ୍କ ଭଳି ଚାହିଁ ରହିଲି କିଛି ସମୟ। ମୋର ମନେ ହେଲା, ସତରେ ମୁଁ ବୋଧହୁଏ ଖୁବ୍ ବଡ଼ ହୋଇଯାଇଛି। ଗିରିଜା ମତେ ବିଡ଼ି ଖଣ୍ଡେ ଖାଇବାକୁ ଦେଲା। ପ୍ରଥମେ ନାହିଁ କରିବି ଭାବୁଥିଲି। ତା'ପରେ ସେ ବିଡ଼ି ଲଗାଇଲାବେଳେ ତା' ବିଡ଼ିରୁ ମୁଁ ବିଡ଼ି ଲଗାଇ ନେଇ ଆସିଲି।

ସେଦିନଠୁ କେବେ କେମିତି ଗିରିଜାଠୁ ବିଡ଼ି ଖଣ୍ଡେ ମାଗି ଖାଏ। ବିଡ଼ି ଟାଣିବାକୁ ମନ ଥିଲେ କ'ଣ ହେବ, ପଇସା କାହିଁ ଯେ? ମା' ତ ସବୁ ଟଙ୍କା ମୋ ନାଁରେ ଜମା କରି ରଖୁଛନ୍ତି। ସେ ଦିନ ପରିବା କିଣି ଯାଇଥିଲି। ବଜାର କରିସାରି ଦେଖିଲି, ପନ୍ଦର ପଇସା ବଳିଗଲା। ବିଡ଼ି ଚାରିଖଣ୍ଡ, ପାନଖଣ୍ଡେ କିଣି ଆଣିଲି। ସବୁଦିନ ମା'ଙ୍କୁ ମୁଁ ପଇସା ଫେରାଏ, ସେଦିନ କିନ୍ତୁ ଫେରେଇଲିନି। ଅନ୍ୟ ଦିନେ ଗିରିଜାକୁ ସେ ପଇସା ମାଗନ୍ତି। ମତେ କିନ୍ତୁ ଭାରି ବିଶ୍ୱାସ। ନ ହେଲେ ବା କ'ଣ ଜାଣିବେ? ଗିରିଜା ଆଗରୁ କେତେଥର ଏଇକଥା ମତେ କହିଥିବ କେଜାଣି।

ଦି'ପହର ବେଳେ ବଗିଚାର ଆମ୍ବଗଛ ମୂଳେ ବସି ଦୁହେଁ ଢ଼େର ବେଳଯାଏ ଗପ କଲୁ।

ବାବୁଙ୍କ ବଡ଼ ପୁଅ ବାହାରେ ପଢ଼ନ୍ତି। ସେ ଛୁଟିରେ ଆସିଥାଆନ୍ତି। ତାଙ୍କୁ ମୋର ପ୍ରାଣେ ଡ଼ର। ପାଣି ଦେବାବେଳେ କାଚଗ୍ଲାସ ଭଲ ସଫା ନ ହେଲେ କି ରାଗ ତାଙ୍କର! ସାଙ୍ଗମାନେ ଆସିଲେ ହଠାତ୍ ଚା' ଜଳଖିଆ ତିଆରି କରି ଆଣିବାକୁ ବରାଦ୍ କରନ୍ତି।

ମନେ ମନେ ଭାବେ ସେ କେମିତି ଶୀଘ୍ର ଚାଲିଯାଆନ୍ତୁ। ଖରା ଛୁଟିଟା ତାଙ୍କର କି ଲମ୍ବା!

କିନ୍ତୁ ନାନୀଙ୍କୁ ମତେ ଭାରି ଭଲ ଲାଗେ। ତାଙ୍କ କାମ ସେ ନିଜେ କରିନିଅନ୍ତି ପଛକେ ରୋଷେଇ ଘରୁ ମୋତେ କେବେ ଡ଼ାକନ୍ତି ନାହିଁ। ତେବେ ମୁଁ ଛାଡ଼େନି। ସେ ଖାଇ ବସିଲେ ତାଙ୍କ ବିଛଣାଟା ସଜାଡ଼ି ଦେଇ ଆସେ। ଜାମା ସଫା କରିଦିଏ। ଭାବେ, ସବୁବେଳେ ତାଙ୍କ ପାଖେ ପାଖେ ରହି କାମ କରନ୍ତି କି?

କିନ୍ତୁ ମୋ ଜୀବନରେ ସେଇ ଘୋର ଦୁର୍ଦ୍ଦିନଟି ହଠାତ୍ ଦିନେ ଏମିତି ଆସି ପହଞ୍ଚିଯିବ ବୋଲି ମୁଁ କେବେ ଭାବି ନ ଥିଲି।

ଖରାଦିନର ସନ୍ଧ୍ୟା। ଗାଡ଼ି ନେଇ ମା'ବାବୁ କୁଆଡ଼େ ବୁଲି ବାହାରିଲେ। ଚାକରାଣୀ ସୁଲି ସେ ପାଖରେ ମସଲା ବାଟୁଥାଏ। ନାନୀ ଗାଧୁଆଘରେ ପଶି ଗାଧୋଉଥାଆନ୍ତି। କ'ଣ ସବୁ ଗୀତ ଗାଉଥାଆନ୍ତି ପାଟିକରି। ମୁଁ ରୋଷେଇ ଘରେ ଚା' କରୁଥିଲି। ତାଙ୍କ ଗୀତ ବି ଶୁଣୁଥିଲି। ନାନୀ କେତେ ଗୋରା! ଖଟରେ ସେ ଶୋଇଥିବା ବେଳେ ତାଙ୍କର ସେଇ ଧଳା ଗୋଲାପୀ ରଙ୍ଗର ଛୋଟ ପାଦଦୁଇଟି ପଦ୍ମଫୁଲ ଭଳି ଦେଖାଯାଏ। ସେ ଘରେ ପାଣି ରଖିଲାବେଳେ ମୁଁ ଘଡ଼ିଏ ଚାହିଁରହେ ସେଇଆଡ଼େ।

ଗାଧୁଆ ଘରୁ ଅସରନ୍ତି ଗୀତର ଲହରି ଭାସି ଆସୁଛି। ତାଙ୍କ ଗାଧୁଆ ସରିନି ଏ ଯାଏ। ତରତରରେ ଚା' କପ୍ ସବୁ ବୈଠକ ଘରେ ଥୋଇଦେଇ ଆସି ମୁଁ ହାତଟା ଧୋଇ ପକେଇଲି। ଛାତିଟା କାହିଁକି ଡ଼ରରେ ଥରି ଯାଉଥାଏ। କିନ୍ତୁ ବାହାର ଅଗଣାଟା ଏ ଯାଏ ଅନ୍ଧାର। ଜାଣି ଜାଣି ମୁଁ ଲାଇଟ୍ ଜଳାଇନି। ଏଥର ଗୋଡ଼ ଟିପି ଟିପି ଅଗଣାରେ ପାଇପ୍ ପର୍ଯ୍ୟନ୍ତ ଗଲି। ପାଇପ୍ ଉପରେ ଗୋଡ଼ ଦେଇ ସ୍କାଇଲାଇଟ୍ କାଚ ବାଟେ ଗାଧୁଆ ଘରକୁ ଚାହିଁ ଦେଖିଲି। ନା...କାଚବାଟେ ଆଲୋକ ଛଡ଼ା ଆଉ କିଛି ବି ଦିଶୁନି। ଏ ଥର ଖୁବ୍ ସାହସରେ ସ୍କାଇ ଲାଇଟ୍‌ର କାଚ ଉପରକୁ ଟେକି ଉଠାଇ ଦେବାକୁ ଚେଷ୍ଟା କରୁଛି, ଠିକ୍ ଏତିକିବେଳେ ନାନୀ ପାଟି କଲେ, "ହେ, କିଏ ସେ ? କିଏ ସେଠି... ?"

ସୁଲି ମସଲା ବଟା ଛାଡ଼ି ଦୌଡ଼ି ଆସିଲା। ସେତେବେଳକୁ ମୁଁ ପାଇପ୍ ଉପରୁ ଓହ୍ଲାଉଥାଏ। ସାନବାବୁ ନାନୀଙ୍କ ପାଟି ଶୁଣି ବୈଠକ ଘରୁ ଚାଲି ଆସିଲେ। ତା'ପରେ ଚାଲିଲା ମୋ' ପିଠିରେ ମାଡ଼ର ବର୍ଷା। ମା', ବାବୁ ଫେରିବା ପୂର୍ବରୁ ସାନବାବୁ ମୋତେ ଧକ୍କା ମାରି ରାସ୍ତାକୁ ଫୋପାଡ଼ି ଦେଲେ।

ମାଧବ ଭାଇକୁ ଆଉ ମୁହଁ ଦେଖାଇବାକୁ ଇଚ୍ଛା ହେଲାନି। ମୋ ଭାଗ୍ୟ ତ ଖରାପ, ନ ହେଲେ ଏତେ ଭଲ ଘର, ଏତେ ଭଲ ମା, ସବୁ ପାଇ ଛାଡ଼ି ଆସିଥାଆନ୍ତି!

ପାଖରେ ଖାଇବାକୁ ପଇସାଟିଏ ନାହିଁ। ତଥାପି ଦେଖା କଲି ଜଣେ

ବଡ଼ ବାବୁଙ୍କୁ। ସେତେବେଳେ ଏ ସହରର ବହୁ ବାବୁଙ୍କୁ ମୁଁ ଚିହ୍ନି ଯାଇଥାଏ। ମୋ ହାତର ଚା' ଜଳଖିଆ ଆମ ବାବୁଙ୍କ ଘରେ ଖାଇ ସେମାନେ ମୋତେ ଭୁଲି ନଥାନ୍ତି। କହିଲି, ''ବାବୁ, ପିଅନ ଚାକିରୀ ଖଣ୍ଡିଏ କରେଇ ଦିଅନ୍ତୁ। ଆପଣ ଯାହା କହିବେ, ସେ କାମ କରିବି।'' ସେ ବାବୁ କାହିଁକି କେଜାଣି ମୋତେ ରଖିବାକୁ ରାଜି ହେଲେନି। କିନ୍ତୁ ଚିଠି ଖଣ୍ଡେ ଲେଖି ଆଉଠାଏ ପଠେଇ ଦେଲେ। ସେତେବେଳେ ରାଜ୍ୟରେ ରାଜାଙ୍କ ଶାସନ ଚାଲୁଥାଏ। ରାଜାଙ୍କ ଭାଇଙ୍କ ଘରେ ମୋର ଚାକିରୀ ହେବାର କଥା। ଯୋଗକୁ ସେଦିନ ରାଜା ବି ଥିଲେ। ଏଥର ମୋ ଜୀବନର ତୃତୀୟ ପର୍ଯ୍ୟାୟ ଆରମ୍ଭ ହୋଇଗଲା। ମୋ ମନରେ ଗଭୀର ଆଶା ଓ ପ୍ରତ୍ୟୟ। ଯେଉଁ ରାଜାଙ୍କ ଦେଖା ପାଇବାକୁ ବହୁ ଚେଷ୍ଟାକରି ମଧ୍ୟ ପ୍ରଜାମାନେ ହତାଶ ହୋଇ ଫେରି ଆସନ୍ତି, ସେ ପୁଣି ମତେ ପ୍ରଶ୍ନ କରୁଛନ୍ତି ନିଜେ।

''କ'ଣ, ରୋଷେଇ ଜାଣିଛୁ?''

''ଆଜ୍ଞା!''

''ଆମର ବିଶ୍ୱସ୍ତ ଲୋକ ଦରକାର, ଆଉ ଏଠି ରହି ଯଦି କୌଣସି ପ୍ରକାର ଗଣ୍ଡଗୋଳ କରୁ...''

''ମୁଁ ଜାଣିଛି, ସେ ଶାସ୍ତି ଭୟଙ୍କର।'' ଏତକ ମନେ ମନେ କହି ତଳକୁ ମୁହଁ ପୋତିଥାଏ। ରାଜା ରାଣୀଙ୍କୁ ଚାହିଁ ଇଂରେଜୀରେ କହିଲେ, ''ଲୋକଟାର ଚେହେରା ଭଲ ଅଛି। କାମ ଯଦି ଜାଣିଥାଏ ରହୁ।''

ତାଙ୍କ କହିବା କଥା ମୁଁ ବୁଝି ପାରିଥିଲି। ସେଇ ଖୁସିରେ କୃତଜ୍ଞତା ଜଣାଇବାକୁ ତତ୍ପର ହୋଇ ଉଠୁଥିବାବେଳେ ହଠାତ୍ ପ୍ରକୃତିସ୍ଥ ହୋଇ ନୀରବରେ ଠିଆହୋଇ ରହିଲି।

ରାଜାଙ୍କ ଭାଇ କହିଲେ, ''ଆଜି ତୁମର ପରୀକ୍ଷାର ଦିନ। ଏଠି ଗୋଟାଏ ଆମର ପାର୍ଟି ହେବ। ଆଜି ଆମର ଘନିଷ୍ଠ ବନ୍ଧୁମାନେ ଆସିବେ। ତୁମେ କେମିତି କ'ଣ ରାନ୍ଧି ଜାଣିଛ, ସେଇ ଅନୁସାରେ ତୁମକୁ ନିଯୁକ୍ତି ଦିଆହେବ।''

ମନ ଫୁର୍ତ୍ତିରେ କାମରେ ଲାଗିଗଲି। ସାନ ରାଣୀ ସାହେବା ବରାଦ୍ କଲେ, ''ପ୍ରଥମେ ପ୍ଲେଟରେ ଚିକେନ୍ ପକୋଡ଼ା ନେଇଆସ। ତା'ପରେ ଟିକିଏ ଡେରିରେ ଡ଼ିନାର୍।''

ଇସ୍ତ୍ରୀକରା ଫୁଲ୍‌ପ୍ୟାଣ୍ଟ, ସାର୍ଟ ଦୁଇଖଣ୍ଡି ପିନ୍ଧିପକେଇ ପକେଟ୍‌ରୁ ପାନିଆଁ କାଢି ମୁଣ୍ଡରେ ଟିକିଏ ଚ଼କେଇ ନେଲି। ଏ'ତ ରାଜା ଘର କଥା, ଭେକ ନ ଥିଲେ କିଏ ପଚାରିବ ?

ସେ ଦିନ ମନେ ହେଲା ମୋ ଭାଗ୍ୟ ମୋତେ ବହୁ ଉପରକୁ ନେଇ ଯାଉଛି। ରାଜା ଖୁବ୍ ପିଇଦେଇ ସୋଫାରେ ଗଡୁଥାଆନ୍ତି। ତାଙ୍କ ପାଖରେ ରାଜ୍ୟର କେତେ ସୁନ୍ଦରୀ ରମଣୀ। ରାଣୀ ତାଙ୍କର ବନ୍ଧୁମାନଙ୍କୁ ନେଇ ମଉଜ କରୁଥାଆନ୍ତି। ଏ ସବୁ ରାଜାଘର କାରବାର। ଆମେ କେତେଜଣ ଚୁପ୍‌ଚାପ୍ ରହି ନୀରବରେ ଆଦେଶ ପାଳିବା କଥା।

ଏ ତ ଦିନକର କଥା ନୁହେଁ। ଏମିତି ପ୍ରାୟ ବହୁ ସନ୍ଧ୍ୟାରେ ରାଜା ଆସନ୍ତି ସେଠିକି। ଆସନ୍ତି ସେମାନଙ୍କର ଅଜସ୍ର ବନ୍ଧୁବାନ୍ଧବୀ। ମୋ ହାତ ତିଆରି ପକୋଡ଼ା, ଚପ୍, କଟ୍‌ଲେଟ୍‌ର ପ୍ରଶଂସା କରନ୍ତି ସେମାନେ। ମଦର ସୁଅ ଛୁଟେ। କେତେ ବୋତଲ ସରେ, ରାଜାଙ୍କ ଗାଡ଼ିରେ ବଜାର ଯାଇ ଆହୁରି ଥରେ ପୁଣି ବୋତଲ କିଣି ଆଣେ ସେମାନଙ୍କ ବରାଦ୍‌ରେ। ପଇସା ଯାହା ବଳେ ସେ ସବୁ ମୋର। ତାକୁ ମାଗିବା କଥା କାହାର ବା ମନେ ଥାଏ ? ସେମାନେ ତ ମଉଜ ମଜଲିସ୍‌ରେ ମାତି ଥାଆନ୍ତି। ଡ଼ିନାର ପାଇଁ କେତେ ଦୁର୍ଲଭ ପଦାର୍ଥ କିଣିବାକୁ ପଡ଼େ, ହାତରେ ବେଶ୍ ମୋଟା ପଇସା ଜମେ।

କିନ୍ତୁ ଖାଏ ବା କିଏ ? ପିଇ ପିଇ ସମସ୍ତେ ମସ୍ତ। ଶେଷକୁ ବୋତଲରେ ଯାହା ବଳିଥାଏ, ତା'ସଙ୍ଗେ ବଳକା ଖାଦ୍ୟ ସବୁ ଧରି ଆମେ ପିଅନ, ଡ୍ରାଇଭର ସବୁ ବସିଯାଉ। କି ସ୍ୱର୍ଗୀୟ ସୁଖର ଦିନ ସେ ସବୁ।

ସେଦିନ ରାତିରେ... ପାର୍ଟି ପରେ ରାଜାଙ୍କର ଅର୍ଦ୍ଧଚେତନ ଶରୀରକୁ ତାଙ୍କର ବନ୍ଧୁମାନେ ବୋହି ନେଲେ ବିଛଣା ପର୍ଯ୍ୟନ୍ତ। ଅନ୍ୟମାନଙ୍କ କଥାବାର୍ତ୍ତାରୁ ବୁଝିଲି, ରାଜାଙ୍କର ମନ ଭଲ ନାହିଁ। ରାଜ୍ୟରେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ଚାଲିଛି। ବନ୍ଧୁମାନଙ୍କ ସହ ସେଇ ସବୁ ଆଲୋଚନା କରୁ କରୁ ସେ ଖୁବ୍ ବେଶି ପିଇଦେଲେ।

ତା'ପର ଦିନମାନଙ୍କରେ ରାଜା ତାଙ୍କ ଭାଇଙ୍କ ଘରକୁ ଅଧିକାଂଶ ଦିନ ଏମିତି ଆସି ପହଞ୍ଚୁଥିଲେ। ଦୁଇ ଭାଇ ଅନେକ ସମୟ ଧରି କେତେ କ'ଣ ଆଲୋଚନା କରୁଥିଲେ। କେବେ କିପରି ସାଙ୍ଗରେ ଆସୁଥିଲେ ରାଣୀ ଏବଂ

ସେଇ କୋଠରୀକୁ କେବଳ ମୋତେ ଡକାଉଥିଲେ। ରାଜାଙ୍କ ନିର୍ଦ୍ଦେଶରେ ଅନେକ ଗୁପ୍ତ ଚିଠି ନେଇ କେତେ ସ୍ଥାନକୁ ଯିବା ମୋର ପ୍ରଧାନ କାର୍ଯ୍ୟ ଥିଲା। ସେଦିନ ଷ୍ଟେସନରୁ ଅଣା ହେଲା ଏକ ବିରାଟ ଲୌହ ଟ୍ରଙ୍କ, ତା' ମଧ୍ୟରେ କ'ଣ ଥିଲା, ମୁଁ କେବେ ଜାଣିବାକୁ ଚେଷ୍ଟା ବି କରିନି। ମୁଁ ଥିଲି ଏକାନ୍ତ ଆଜ୍ଞାବହ ଭୃତ୍ୟ। ମୋତେ ଯେଉଁ କାର୍ଯ୍ୟରେ ଲଗା ଯାଉଥିଲା ମେସିନ୍ ଭଳି କରି ଯାଉଥିଲି। ମୋର ଏଥିରେ ଆଉ ଭୁଲ୍ କ'ଣ ?

ସେଇ ରାତ୍ରିରେ ଡ୍ରାଇଭର ଗିରିଧାରୀ କହିଲା, ''ଜାଣୁ କହ୍ନେଇ, ସେ ଟ୍ରଙ୍କରେ ଖାଲି ସୁନା ଆଉ ଟଙ୍କା। ରାଜାଙ୍କ ପାଲେସ୍‌ରୁ ସେଇଟା ଅଣା ହେବାର କାରଣ ତୁ ଅଳ୍ପଦିନ ମଧ୍ୟରେ ଜାଣି ପାରିବୁ।'' ସତ କହିବାକୁ ଗଲେ ମୁଁ ଏତେ କ୍ଳାନ୍ତ ହୋଇ ପଡ଼ିଥିଲି ଯେ ମୋର ସେସବୁ ଜାଣିବାକୁ ଟିକିଏ ବି ଆଗ୍ରହ ନ ଥିଲା। ମୁଁ ତାକୁ ବରଂ ସତର୍କ କରି କହିଲି, ''ଭାଇ, ଏଠି କାନ୍ଥବାଡ଼ର ବି କାନ ଅଛି। କିଛି କଥା ନ କହି ଚୁପ୍‌ଚାପ୍ ଶୋଇପଡ଼।''

ସତକୁ ସତ ସବୁଦିନ ପାଇଁ ଶୋଇଗଲା ଗିରିଧାରୀ। ସକାଳୁ ତା'ର ମୃତ ଶରୀରଟା ମୋ ପାଖରେ ପଡ଼ି ରହିଥିଲା। ଖୁବ୍ ସକାଳୁ ମୃତ ଦେହର ସତ୍କାର ହୋଇଗଲା ତା' ଜ୍ଞାତିଲୋକ ଆସି ପହଞ୍ଚିବା ପୂର୍ବରୁ। ସମସ୍ତେ କେତେଆଡୁ କେତେ କଥା କହିଲେ। କିଏ କହିଲା, ସେ ବହୁତ ପିଇ ଦେଇଥିବାରୁ ତା' ଛାତି ଫାଟିଯାଇ ରକ୍ତବାନ୍ତି କରି ମଲା। କିଏ କହିଲା, ସେ ହଠାତ୍ ହୃଦ୍‌ରୋଗର ଶୀକାର ହୋଇ ପଡ଼ିଲା। କିନ୍ତୁ ଗିରିଧାରୀ ପାଖରେ ମୁଁ ଶୋଇଥିଲି ଜାଣି ନିଜେ ଖୋଦ୍ ରାଜା ମତେ ଡ଼କେଇ କହିଲେ, ''ଦେଖ୍ କହ୍ନେଇ, ତୁ ଆମର ନିଜ ଲୋକ। ଗିରିଧାରୀର ଆକସ୍ମିକ ମୃତ୍ୟୁ ବିଷୟରେ କେବେ କାହା ସଙ୍ଗେ ଯେପରି କଥାବାର୍ତ୍ତା ନ କରୁ।''

ମତେ କାହିଁକି ଲାଗିଲା ଯେପରି ବିପଦର କଳାଛାଇ ମୋତେ ଘେରି ରହିଛି। ତା' ପରଠୁ ଭୟ ଆଉ ଆତଙ୍କରେ ଗୋଟାଏ ମୁହୂର୍ତ୍ତ ବି ଶାନ୍ତିରେ ରହି ପାରିଲିନି। ବାହାରକୁ ଗଲେ ଦୋକାନ ବଜାରରେ ଲୋକେ କଥାବାର୍ତ୍ତା କରନ୍ତି, ''ଏ ରାଜାର ସ୍ୱେଚ୍ଛାଚାରିତା ଅସହ୍ୟ ହେଲାଣି। ଦେଖିବ ରୁହ, ଏ ଗାଦିରୁ ଯିବ। କେତେଦିନ ଆଉ ଆମେ ଅନ୍ଧଶାସନ ମାନି ଚଳିବୁ ?''

ମୁଁ ବିସ୍ମିତ, ବିମୂଢ଼। ରାତି ପରେ ସକାଳ ପୁଣି ତା'ପରେ କେତେ

ରାତି ଏମିତି କଟି ଯାଉଛି। ମୁଁ ଯନ୍ତ୍ରବତ୍ ଚାଲିଛି। କିନ୍ତୁ କ'ଣ ହେବ ମୋର ଗତି ? ଆଉ କକ୍‌ଟେଲ ପାର୍ଟିର ଆୟୋଜନ ହୁଏନା। କେବଳ ଗଭୀର ରାତିରେ ରାଜା ଧାଇଁ ଆସନ୍ତି ସାନଭାଇ ଘରକୁ। ମନର ଉତ୍ତେଜନା ଭୁଲିବା ପାଇଁ ଦୁଇଭାଇ ଅଳ୍ପ ଅଳ୍ପ ମଦ୍ୟପାନ କରନ୍ତି। ତା' ମଧ୍ୟ ମୁଁ ସେମାନଙ୍କୁ ପରିବେଷଣ କରେ। ସେ ସମୟରେ ତାଙ୍କର ବନ୍ଧୁ ଏବଂ ପାଖ ଲୋକମାନେ ପ୍ରାୟ ଆସିବା କମେଇ ଦେଇ ଥାଆନ୍ତି।

ମନେ ପଡୁଛି, ସେଇଦିନ ରାତି ପ୍ରାୟ ସାଢ଼େ ଗୋଟାଏ ବେଳେ ମୋ କୋଠରୀରେ କମ୍ବଳ ଖଣ୍ଡିଏ ଘୋଡ଼ିହୋଇ ମୁଁ ଶୋଇ ଯାଇଥିଲି। ରାଜାଙ୍କ ଭାଇ ନିଜେ ଆସି ମତେ ଉଠେଇଲେ। କହିଲେ, "କହ୍ନେଇ, ତୁ ଆମର ଏକାନ୍ତ ବିଶ୍ୱସ୍ତ। ତତେ କେତେକ କାମ କରିବାକୁ ପଡ଼ିବ।" ପ୍ରତ୍ୟୁତ୍ତର ନ ଦେଇ ନୀରବରେ ମୁଁ ତାଙ୍କ ପଛରେ ଚାଲିବାକୁ ଲାଗିଲି। ନ ଯାଆନ୍ତି କିପରି ? ସେ ତ ମୋର ଅନ୍ନଦାତା।

ରାଜା ବସିଥିଲେ ଖଣ୍ଡିଏ ଇଜି ଚେୟାରରେ। ପାଖ ଚେୟାରରେ ବସିଲେ ତାଙ୍କର ଭାଇ। ମୋତେ ଆଜ୍ଞା ଦେଇ କହିଲେ, "ହେଇ ଦେଖ୍, ସେଇ ଛୋଟ କୋଠରୀରେ ପ୍ରାୟ ଶହେ ଖଣ୍ଡ ହେବ ଫାଇଲ୍ ରହିଛି। ସେ ସବୁ ଆଣି ଅଗଣାରେ ଗଦେଇ ଦେଇ ଦିଆସିଲ୍ ମାରି ଗୋଟିକ ପରେ ଗୋଟିଏ ଜଳାଇ ଦେ।"

ଅନେକ ଟଙ୍କା ପାଇଛି। ଦେଶ, ବିଦେଶର କେତେ ସୌଖିନ ଜିନିଷ ଟ୍ରଙ୍କ ବାକ୍ସରେ ସାଇତି ରଖିଛି। କାହାକୁ ଦେବି, କିଏ ଅଛି ମୋର ? ଚିଠି ଦେଇଥିଲି ଘରକୁ। ତଥାପି ବାପା ଖୁବ୍ ରାଗିଛି। ନୈଷ୍ଠିକ ବ୍ରାହ୍ମଣ ଘରର ସନ୍ତାନ ହେଇ ଅନ୍ୟ ଛୋଟ ଜାତି ଲୋକଙ୍କ ଅଇଁଠା ବାସନ ମାଜୁଛି, ସେମାନଙ୍କର ଉଚ୍ଛିଷ୍ଟ ଖାଉଛି, ଏମିତି ବହୁ ଗୁଜବ ତା' କାନକୁ ଯିବାରୁ ସେ କ୍ରୋଧରେ ପ୍ରଜ୍ୱଳିତ ହୋଇ ଘରକୁ ଯିବାକୁ ମୋତେ ବାରଣ କରି ଦେଇଛି। ମାତ୍ର ବୋଉ ବିଚାରୀ କେତେ କାନ୍ଦୁଛି ! ମୁଁ ଆସିବା ଦିନରୁ ତା' ଲୁହ ଶୁଖୁନି। ଆହା, ଥରେ ଯାଇ ତା କୋଳରେ ମୁଣ୍ଡ ଦେଇ ମୋର ଏ ସବୁ ପାପର ପ୍ରାୟଶ୍ଚିତ କରନ୍ତି କି !

ସତେ କ'ଣ ମୁଁ ଆଉ ଏଠୁ ଯାଇ ପାରିବି ! କେତେ କାଗଜପତ୍ର

ଜଳି ଜଳି ଯାଉଛି। ଏ ରାଜ୍ୟର କେତେ ପ୍ରଜାଙ୍କର ଭାଗ୍ୟ ବି ଜଳି ଯାଉଛି। ଦୁଇ ଭାଇ ଅପଲକ ନେତ୍ରରେ ସେ ଅଗ୍ନିଶିଖାକୁ ଚାହିଁ ରହିଛନ୍ତି। କିଏ ଜାଣେ ହୁଏତ ଶେଷରେ ସେମାନେ ସେଇ ଅଗ୍ନିକୁ ମୋତେ ଠେଲି ଦେଇ ପୂର୍ଣ୍ଣାହୁତି ଦେବାର ସିଦ୍ଧାନ୍ତ କରିଥିବେ।

ମୋର ମୁଣ୍ଡ ରକ୍ଷା ହୋଇଗଲା। ପ୍ରାୟ ରାତ୍ରିର ଶେଷ ପହରରେ ମୁଁ ମୋ କୋଠରୀକୁ ଫେରିଗଲି। ଆଖିରେ ନିଦ ନ ଥାଏ। ସେଇ ମୁହୂର୍ତ୍ତରେ ସେ ସ୍ଥାନ ଛାଡ଼ି ପଳେଇ ଯିବାର ସିଦ୍ଧାନ୍ତ କଲି। ପୂର୍ବରୁ ମୋର ମୂଲ୍ୟବାନ ଜିନିଷ ସବୁକୁ ଏବଂ ପୂର୍ବର ସେ ମା' ଦେଇଥିବା ପାସ୍‌ବୁକ୍ ଖଣ୍ଡିକ ମୋର ଜଣେ ଘନିଷ୍ଠ ବନ୍ଧୁଙ୍କ ଘରେ ରଖି ଦେଇଥିଲି। ଭାବିଲି ତା'ରି ଘରେ କିଛିଦିନ ରହି ଗାଁକୁ ଫେରିଯିବି। ତେଣିକି ମାମୁଁ, ବାପାଙ୍କର ମାଡ଼ଗାଳି ଆଉ ମୋର କିଛି କ୍ଷତି କରି ପାରିବନି। ଏ ଜୀବନରେ ତ ବହୁ ଆଘାତ ସହିଲିଣି। ଏ ଥର ମୋ ବୋଉ ପାଦତଳେ ଏ ସବୁ ସମ୍ପତ୍ତି ଥୋଇଦେଇ ତା କୋଳରେ ମୁଣ୍ଡ ରଖି ନିଶ୍ଚିନ୍ତରେ ଘଡ଼ିଏ ଶୋଇ ପଡ଼ିବି।

କିନ୍ତୁ ବାବୁ, ଏତେ ସୁଖ ମୋ କପାଳରେ ଲେଖା ନାହିଁ। ମୁଁ କ'ଣ ଜାଣିଥିଲି ଏତେ ଶୀଘ୍ର ରାଜ୍ୟରେ ବିଦ୍ରୋହର ସୂତ୍ରପାତ ହୋଇ ରାଜା ଗାଦିଚ୍ୟୁତ ହେବେ? ସବୁ ଘଟିଗଲା ଆଖି ପିଛୁଳାକେ। ପ୍ରଜାଙ୍କ ଅଦାଲତର କାଠଗଡ଼ାରେ ଛିଡ଼ାହୋଇ ତାଙ୍କ କୃତ ସମସ୍ତ ଅପକର୍ମର ସ୍ୱୀକାରୋକ୍ତି କରୁଛନ୍ତି ଖୋଦ୍ ରାଜା ସାହେବ। ମୁଁ ତ ଛାର ଗୋଲାମଟାଏ, ଆଉ ମୋର କିଛି କହିବାର ନାହିଁ। ସେଇ ମୋର ଶେଷ ଇଚ୍ଛାଟି ମୁଁ ପ୍ରକାଶ କରିଛି। ଏଥର ମତେ ନେଇ ଆପଣଙ୍କର ଯାହା ମନ ତା' କରନ୍ତୁ।

× × × ×

ପୋଲିସ୍ ଇନ୍‌ସପେକ୍ଟର କହ୍ନେଇର ବୟାନକୁ ଲିପିବଦ୍ଧ କରି ସାରିଥିଲେ। ତାଙ୍କ ନିର୍ଦ୍ଦେଶରେ ତା' ହାତରେ ହାତକଡ଼ା ପିନ୍ଧେଇ ଦିଆଗଲା।

ଜନତାର ସ୍ରୋତ କାଟି ପୋଲିସର ଜିପ୍ ଆଗେଇ ଯିବାବେଳେ ଅର୍ଥହୀନ, ଅସହାୟ ଦୃଷ୍ଟିରେ ଶୂନ୍ୟକୁ ଚାହିଁ ରହିଥିଲା କହ୍ନେଇ। □ □ □

ଝଂକାର, ୧୯୭୮